ଶ୍ରୀଅରବିନ୍ଦ ଲୋକ-ସାହିତ୍ୟ—( ୧୧, ୧୨ )

# ଶ୍ରୀଅରବିନ୍ଦ ଅନ୍ତର୍ଜାତିକ ଶିକ୍ଷା-କେନ୍ଦ୍ର

ଲେଖକ :
ପ୍ରପତ୍ତି

ନବଜ୍ୟୋତି କାର୍ଯ୍ୟାଳୟ
ଶ୍ରୀଅରବିନ୍ଦ ଆଶ୍ରମ
ପଣ୍ଡିଚେରୀ-୨

*

୫୦ ନୂ. ପ.

# ପ୍ରଥମ ଭାଗ

## ଶିକ୍ଷା-କେନ୍ଦ୍ରର ମୂଳଭିତ୍ତି

ପ୍ରଚଳିତ ପାଶ୍ଚାତ୍ୟ ଶିକ୍ଷା

*

ପ୍ରାଚୀନ ଭାରତୀୟ ଶିକ୍ଷା

*

ଶିକ୍ଷାକ୍ଷେତ୍ରରେ ଭାରତର ଜାଗରଣ

*

ସର୍ବାଙ୍ଗୀନ ଶିକ୍ଷାର ଦୃଷ୍ଟିକୋଣ

*

ସର୍ବାଙ୍ଗୀନ ଶିକ୍ଷାର ଚତୁର୍ବିଧ ଅଙ୍ଗ

*

ଶାରୀରିକ ଶିକ୍ଷା

ପ୍ରାଣିକ ଶିକ୍ଷା

ମାନସିକ ଶିକ୍ଷା

ଚୈତ୍ୟ ଓ ଆଧ୍ୟାତ୍ମିକ ଶିକ୍ଷା



# ଶ୍ରୀଅରବିନ୍ଦ
# ଅନ୍ତର୍ଜାତିକ ଶିକ୍ଷାକେନ୍ଦ୍ର

## ମୂଳଭିତ୍ତି :

ଶ୍ରୀଅରବିନ୍ଦ ଓ ଶ୍ରୀମାଙ୍କର ଅଧ୍ୟାତ୍ମ-ସାଧନାର ଅମୃତମୟ କାହାଣୀ ଆଜି ବିଶ୍ୱ-ବିଦିତ, ସେହିପରି ଆଜି ବିଶ୍ୱ-ବିଦିତ ତାଙ୍କ ସାଧନାର ପୀଠ ପଣ୍ଡିଚେରୀ ଶ୍ରୀଅରବିନ୍ଦ ଆଶ୍ରମ । ଗତ କେତେବର୍ଷ ହେଲା ଏହି ଆଶ୍ରମକୁ ପୃଷ୍ଠଭୂମିରେ ରଖି ଏକ ନୂତନ ଏବଂ ମହାନ୍ ସଂସ୍ଥା "ଶ୍ରୀଅରବିନ୍ଦ ଅନ୍ତର୍ଜାତିକ ଶିକ୍ଷାକେନ୍ଦ୍ର" ଧୀରେ ଧୀରେ ଗଢ଼ିଉଠୁଛି । ଶ୍ରୀଅରବିନ୍ଦଙ୍କ ତପସ୍ୟାଲବ୍ଧ ମହାନ୍ ସତ୍ୟକୁ ଜଗତରେ ଯଥାର୍ଥ ରୂପଦାନ କରିବା ନିମିତ୍ତ ସ୍ୱୟଂ ଶ୍ରୀମା ଏହି ଶିକ୍ଷାକେନ୍ଦ୍ର ସ୍ଥାପନ କରି ଏହାର ସମସ୍ତ ଭାର ଗ୍ରହଣ କରିଅଛନ୍ତି ।

ଜାତୀୟ ପୁନର୍ଗଠନରେ ଶିକ୍ଷାର ସ୍ଥାନ ଅତି ଗୁରୁତ୍ୱପୂର୍ଣ୍ଣ । ଆଧୁନିକ ଭାରତର ମନୀଷୀ ତ୍ରୟ : କବିଗୁରୁ ରବୀନ୍ଦ୍ରନାଥ, ମହାତ୍ମା ଗାନ୍ଧୀ ଓ ଶ୍ରୀଅରବିନ୍ଦ ଭାରତର ପୁନରୁତ୍ଥାନ ନିମିତ୍ତ ଏକ ଏକ ନୂତନ ଶିକ୍ଷା ପଦ୍ଧତିର ପରିକଳ୍ପନା କରିଥିଲେ । ବିଶ୍ୱକବି ଶାନ୍ତିନିକେତନ ପ୍ରତିଷ୍ଠା କରି ଏକ ବିଶ୍ୱ-ବ୍ୟାପକ ନୂତନ ସଂସ୍କୃତିର ଉତ୍ଥାନ ଓ ପ୍ରସାର ନିମିତ୍ତ ଚେଷ୍ଟିତ ଥିଲେ । ମହାତ୍ମାଜୀଙ୍କ "ମୌଳିକ ଶିକ୍ଷା" ଆଜି ମଧ୍ୟ ଦେଶରେ ନାନା ସ୍ଥଳରେ ପ୍ରଚଳିତ ଏବଂ ଏହାଦ୍ୱାରା ଦେଶର ପୁନର୍ଗଠନ ଯେ ସମ୍ଭବ ହେବ ତାହା ଗାନ୍ଧିଜୀ ବିଶ୍ୱାସ କରୁଥିଲେ । ଶ୍ରୀଅରବିନ୍ଦ ବହୁବର୍ଷଧରି ଶିକ୍ଷାକ୍ଷେତ୍ରରେ

କାର୍ଯ୍ୟ କରିଥିଲେ । ବରୋଦାରେ ସେ ତେରବର୍ଷକାଳ ଅଧ୍ୟାପକ ଥିଲାବେଳେ ଶିକ୍ଷା ସମ୍ବନ୍ଧରେ ଗଭୀର ଭାବରେ ଆଲୋଚନା କରିଥିଲେ । ୧୯୦୫-୬ ସାଲରେ ସ୍ୱଦେଶୀ ଆନ୍ଦୋଳନ ସମୟରେ ସେ ବଙ୍ଗଦେଶରେ ପ୍ରଥମ ପ୍ରତିଷ୍ଠିତ 'ଜାତୀୟ ଶିକ୍ଷା କଲେଜ'ର ଅଧ୍ୟକ୍ଷ ହୋଇଥିଲେ । ଶ୍ରୀଅରବିନ୍ଦ 'A System of National Education', 'The brain of India' ଏବଂ 'ଭବାନୀ ମନ୍ଦିର' ପ୍ରଭୃତି ପୁସ୍ତିକାରେ ଜାତୀୟ ଶିକ୍ଷାର ପୁନର୍ଗଠନ ସମ୍ବନ୍ଧେ ବହୁ ବିଷୟ ଆଲୋଚନା କରିଅଛନ୍ତି । ଏହି ସମୟରେ ସେ ଲେଖିଥିଲେ :—

"For the work of the present and still more for the work of the future, it is imperatively necessary to creat a centre of thought and knowledge which will revolutionise the brain of the nation .... A new centre of thought implies a new centre of education."

ଅର୍ଥାତ୍ "ବର୍ତ୍ତମାନର କାର୍ଯ୍ୟ ବିଶେଷତଃ ଭବିଷ୍ୟତ କାର୍ଯ୍ୟ ନିମିତ୍ତ ଏପରି ଚିନ୍ତାଧାରା, ଏପରି ଜ୍ଞାନ ସୃଷ୍ଟି କରିବାକୁ ପଡ଼ିବ ଯାହା ଜାତୀୟ ମସ୍ତିଷ୍କକୁ ସମ୍ପୂର୍ଣ୍ଣରୂପେ ବିପ୍ଲବମୟ କରିଦେବ । କିନ୍ତୁ ଏହି ନୂତନ ଚିନ୍ତାଧାରାର ବିକାଶର ଅର୍ଥହିଁ ହେଉଛି ଏକ ନୂତନ ଶିକ୍ଷା-କେନ୍ଦ୍ରର ପ୍ରତିଷ୍ଠା ।" ବିପ୍ଳବୀଗୁରୁ ଅରବିନ୍ଦଙ୍କର ଏହି ଦିବ୍ୟ-ବାଣୀ ଆଜି ତାଙ୍କ ନାମରେ ପ୍ରତିଷ୍ଠିତ ପଣ୍ଡିଚେରୀ ଅନ୍ତର୍ଜାତିକ ଶିକ୍ଷା-କେନ୍ଦ୍ରରେ ପ୍ରତିଫଳିତ ହେବାକୁ ଯାଉଛି । ଶ୍ରୀଅରବିନ୍ଦ ଅନ୍ତର୍ଜାତିକ ଶିକ୍ଷାକେନ୍ଦ୍ର ମାନବ-ଜୀବନ, ଜାତୀୟ-ଜୀବନ ତଥା ସମଗ୍ର ଜଗତରେ ଏକ ଅତି ମହାନ୍ ବିପ୍ଳବାତ୍ମକ ପରିଣାମର ସୂଚନା କରୁଛି । କେବଳ ନୂତନ ଭାବଧାରା, ନୂତନ ଜ୍ଞାନ ବିତରଣ ସକାଶେ ଏହି ମହାନ୍

ବିଦ୍ୟାପୀଠ ପ୍ରତିଷ୍ଠିତ ହୋଇ ନାହିଁ, ବରଂ ଏକ ନୂତନ ମାନବ-ସମାଜ, ନୂତନ ମାନବ ଜାତିର ଭିତ୍ତି ସ୍ଥାପନ ଏବଂ ପରିପୂର୍ଣ୍ଣ ବିକାଶହିଁ ଏହାର ପୂର୍ଣ୍ଣତମ ଆଦର୍ଶ ଓ ଲକ୍ଷ୍ୟ । ବର୍ତ୍ତମାନ ଜୀବନ ଓ ବର୍ତ୍ତମାନ ସମାଜ ଆମ୍ଭମାନଙ୍କର ଶେଷ ପରିଣତି ନୁହେଁ । ଜୀବନର କ୍ରମୋନ୍ନତ ରୂପାନ୍ତର ଆବଶ୍ୟକ । ସମାଜର ସୁସଂହତ ଗୋଷ୍ଠିବଦ୍ଧ ଜୀବନ ଆବଶ୍ୟକ । ଗୁଟିଏ ମହାନ୍ ସମସ୍ୟା ଯେଉଁ ସମଗ୍ର ମାନବ ସମାଜ ଆଜ ଉଦ୍‌ବିଗ୍ନ ହୋଇ ଉଠିଛି । (୧) ସମଗ୍ର ମାନବ-ସମାଜରେ ଐକ୍ୟ ଓ ସମନ୍ୱୟ ସ୍ଥାପନ (୨) ଜୀବନ ଓ ଜଗତରେ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା (୩) ବ୍ୟକ୍ତିଗତ ଜୀବନରେ ଏକ ଗଭୀର ସୁଦୃଢ଼ ଭୂମି ଓ ଅନ୍ତରାତ୍ମାର ଆବିଷ୍କାର (୪) ପୂର୍ଣ୍ଣାଙ୍ଗ ଜୀବନର ସନ୍ଧାନ । କିନ୍ତୁ ଏହିସବୁ ମହାନ୍ ସତ୍ୟର ଆବିଷ୍କାର ନିମିତ୍ତ ଏକ ସମ୍ପୂର୍ଣ୍ଣ ଉନ୍ନତ ଶିକ୍ଷା-ପଦ୍ଧତିହିଁ ଆବଶ୍ୟକ । ସେଥିପାଇଁ ପ୍ରତ୍ୟେକ ଦେଶରେ ଶିକ୍ଷା-ସମସ୍ୟା ଏକ ମୁଖ୍ୟ ସମସ୍ୟାରୂପେ ଦେଖା ଦେଇଛି ।

୧୯୫୦ ସାଲ୍ ଡିସେମ୍ବର ତା ୧୫ରିଖରେ ଶ୍ରୀଅରବିନ୍ଦଙ୍କ ମହା-ପ୍ରୟାଣ ଘଟିଲା । ୧୯୫୧ ସାଲ୍ ଅପ୍ରେଲ୍ ତା ୨୪ ରିଖରେ ଶ୍ରୀଅରବିନ୍ଦ ଅନ୍ତର୍ଜାତିକ ଶିକ୍ଷାକେନ୍ଦ୍ରର ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହେଲା । ଏହି ଉତ୍ସବରେ ଦେଶ ବିଦେଶର ଅନେକ ବିଶିଷ୍ଟ ଶିକ୍ଷାବିତ୍ ଓ ପଣ୍ଡିତ ଉପସ୍ଥିତ ଥିଲେ । ଏହି ଉତ୍ସବରେ ଶ୍ରୀମା ଯେଉଁ ମହାନ୍ ଘୋଷଣା କରିଥିଲେ ତାହାହିଁ ଅନ୍ତର୍ଜାତିକ ଶିକ୍ଷାକେନ୍ଦ୍ରର ଲକ୍ଷ୍ୟ ଓ ଆଦର୍ଶ ବୋଲି ଗ୍ରହଣ କରାଯାଇଛି ।

"Sri Aurobindo is present in our midst and with all the power of his creative genius he presides over the formation of the university centre which for years

he considered as one of the best means of preparing the future humanity to receive the supramental light that will transform the elite of to-day into a new race manifesting upon earth the new light and force and life.

"In his name I open to-day this convention meeting here with the purpose of realising one of his most cherished ideals."

ଅର୍ଥାତ୍ "ଶ୍ରୀଅରବିନ୍ଦ ଏଠାରେ ଆମ୍ଭମାନଙ୍କ ମଧ୍ୟରେ ଉପସ୍ଥିତ ଅଛନ୍ତି । ତାଙ୍କ ପ୍ରଭାବରେ ସର୍ବାଙ୍ଗୀନ ସୃଜନ-ଶକ୍ତିସହ ସେ ଏହି ବିଶ୍ୱବିଦ୍ୟାଳୟ କେନ୍ଦ୍ରର ନିର୍ମାଣ ଉଦ୍ୟୋଗ ପରିଚାଳନା କରୁଛନ୍ତି । ବହୁ ବର୍ଷ ଧରି ସେ ମନେ କରିଥିଲେ ଯେ ଏହି ଉପାୟରେ ଭବିଷ୍ୟତ ମାନବ-ଜାତିକୁ ସବୁଠାରୁ ଉତ୍ତମଭାବେ ପ୍ରସ୍ତୁତ କରାଯାଇ ପାରେ ଯେଉଁଥିରେ ମାନବ-ସମାଜ ପକ୍ଷେ ଅତି-ମାନସ ଜ୍ୟୋତି ଗ୍ରହଣ କରିବା ସମ୍ଭବ ହେବ । ଏହି ଜ୍ୟୋତିହିଁ ବର୍ତ୍ତମାନ ଏକଶ୍ରେଷ୍ଠ ମନୁଷ୍ୟ-ଗୋଷ୍ଠୀ (group)କୁ ଏକ ନୂତନ ମାନବ-ଜାତିରେ ପରିଣତ କରିବ ଏବଂ ଏହାରି ମାଧ୍ୟମରେ ପୃଥିବୀରେ ନୂତନ ଆଲୋକ, ନୂତନ ଶକ୍ତି, ନୂତନ ଜୀବନ ପ୍ରକାଶିତ ହେବ ।

"ଆଜି ଏହି ଅଧିବେଶନ ପ୍ରତିଷ୍ଠିତ ହୋଇଛି ଶ୍ରୀଅରବିନ୍ଦଙ୍କ ଏକ ଅତି ପ୍ରିୟ ଆଦର୍ଶକୁ ବାସ୍ତବ ରୂପ ଦେବାକୁ । ତାଙ୍କ ନାମରେ ମୁଁ ଏହି ସଭାର ଉଦ୍‌ଘାଟନ କରୁଅଛି ।"

ଯୋଗର ଭିତ୍ତିରେ ଆଧୁନିକ ଶିକ୍ଷା ମାଧ୍ୟମରେ କିପରି ଶ୍ରୀଅର-ବିନ୍ଦଙ୍କ ଦିବ୍ୟ-ଜୀବନ-ଆଦର୍ଶ ଜଗତରେ ପ୍ରତିଷ୍ଠିତ ହୋଇପାରିବ,

ଏହାହିଁ ଏହି ଶିକ୍ଷାକେନ୍ଦ୍ରର ମୁଖ୍ୟ ଉଦ୍ଦେଶ୍ୟ ବୋଲି ଗ୍ରହଣ କରାଯାଇଛି । ବର୍ତ୍ତମାନ ଏହି ଅନ୍ତର୍ଜାତିକ ଶିକ୍ଷାପୀଠ ଗଠିତ ହେବାର ବାରବର୍ଷ ବ୍ୟତୀତ ହୋଇଯାଇଛି ଏବଂ ଏହି ଶିକ୍ଷାନୁଷ୍ଠାନରେ ଯେଉଁ ଶିକ୍ଷାବିଧି ପ୍ରବର୍ତ୍ତିତ ଓ ଅନୁସୃତ ହେଉଅଛି, ତାହାହିଁ ସର୍ବାଙ୍ଗୀନ ଶିକ୍ଷା (Integral Education) ନାମରେ ଖ୍ୟାତ ।

## ପ୍ରଚଳିତ ପାଶ୍ଚାତ୍ୟ ଶିକ୍ଷା :

ଶ୍ରୀଅରବିନ୍ଦ ଓ ଶ୍ରୀମା'ଙ୍କ ପ୍ରବର୍ତ୍ତିତ ଏହି ସର୍ବାଙ୍ଗୀନ ଶିକ୍ଷାମନ୍ତ୍ର ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରିବା ପୂର୍ବରୁ ବର୍ତ୍ତମାନ ପ୍ରଚଳିତ ପାଶ୍ଚାତ୍ୟ ଶିକ୍ଷା-ବ୍ୟବସ୍ଥା ଓ ପ୍ରାଚୀନ ଭାରତର ଶିକ୍ଷା-ବ୍ୟବସ୍ଥା ସମ୍ବନ୍ଧରେ ସଂକ୍ଷେପରେ କିଛି ଆଲୋଚନା କରିବା ପ୍ରୟୋଜନ । ପ୍ରାୟ ଶହେ ବର୍ଷ ପୂର୍ବେ ଜଗତରେ ଯେଉଁ ଶିକ୍ଷାବିଧି ପ୍ରଚଳିତ ଥିଲା ତାହାର ଆଜି ଆମୂଳଚୂଳ ପରିବର୍ତ୍ତନ ଘଟିଛି । ପୂର୍ବେ ଶିକ୍ଷାର ଲକ୍ଷ୍ୟ ଥିଲା ମସ୍ତିଷ୍କର ଶ୍ରୀବୃଦ୍ଧି ସାଧନ, ଅର୍ଥାତ୍ ଶିଶୁର କ୍ଷୁଦ୍ର ମସ୍ତିଷ୍କକୁ କୌଣସି ପ୍ରକାରେ ବିଭିନ୍ନ ବସ୍ତୁରେ ପୂର୍ଣ୍ଣ କରିବା । କିନ୍ତୁ ବର୍ତ୍ତମାନ ଶିକ୍ଷାର ଉଦ୍ଦେଶ୍ୟ ଶିଶୁ-ଅନ୍ତର୍ନିହିତ ବ୍ୟକ୍ତିତ୍ୱର ପରିପୂର୍ଣ୍ଣ ଓ ସୁସମଞ୍ଜସ ବିକାଶ । ମନୁଷ୍ୟ ଜୀବନର ସମଗ୍ର ଓ ପରିପୂର୍ଣ୍ଣ ବିକାଶ ଓ ସମୃଦ୍ଧି-ସାଧନ ବର୍ତ୍ତମାନ ଶିକ୍ଷାର ମୂଳ ଆଦର୍ଶ । ମନୁଷ୍ୟର ଶାରୀରିକ, ମାନସିକ, ଭାବମୂଳକ, ଇଚ୍ଛାମୂଳକ, ସୌନ୍ଦର୍ଯ୍ୟମୂଳକ, ନୈତିକ ତଥା ଆଧ୍ୟାତ୍ମିକ ବିକାଶ ପ୍ରଭୃତି ବ୍ୟକ୍ତିତ୍ୱର ବିଭିନ୍ନ ବିଭାବ ଓ ଅଙ୍ଗଗୁଡ଼ିକୁ ଶିକ୍ଷା ମାଧ୍ୟମରେହିଁ ପରିପୁଷ୍ଟ ଓ ପରିବର୍ଦ୍ଧନ କରାଯାଇ ପାରିବ । ପୂର୍ବେ ଶିଶୁ-ଜୀବନ ସମ୍ବନ୍ଧରେ ବିଶେଷ ଗବେଷଣା କରା ହୋଇ ନ ଥିଲା ଏବଂ ଅନେକେ ଭାବୁଥିଲେ ଯେ ଶିଶୁ

ଗୋଟାଏ କ୍ଷୁଦ୍ର ମାନବ । ସେଥିପାଇଁ ପୂର୍ବେ ଶିଶୁ-ଶିକ୍ଷା ଥିଲା ଉପଦେଶାତ୍ମକ (instructive) ଅଥଚ ତାହା ହେବା ଉଚିତ୍ ଗଠନମୂଳକ (formative) । ବର୍ତ୍ତମାନ ପାଶ୍ଚାତ୍ୟ ମନସ୍ତତ୍ତ୍ୱବିଦ୍‌ମାନେ କହନ୍ତି ଯେ ଗ୍ରେଟ ବେଙ୍ଗଫୁଲା ଯେପରି ଗୋଟାଏ କ୍ଷୁଦ୍ର ବେଙ୍ଗ ନୁହେଁ, ବରଂ ତାହା ପୂର୍ଣ୍ଣାଙ୍ଗ ବେଙ୍ଗରେ ପରିଣତ ହେବା ପଥରେ, ସେହିପରି ମାନବ ଶିଶୁ ଗୋଟାଏ କ୍ଷୁଦ୍ର ମାନବ ନୁହେଁ, ବରଂ ପୂର୍ଣ୍ଣ ମାନବ ବିକାଶ ପଥରେ ଏକ ବିଶିଷ୍ଟ ପ୍ରାଣୀ । ଶିଶୁ ଓ ପରିପୂର୍ଣ୍ଣ ମାନବ ମଧ୍ୟରେ ବହୁତଗୁଡ଼ିଏ କ୍ରମୋନ୍ନତ ସ୍ତର ରହିଛି ଏବଂ ଠିକ୍ ଏହି ସକାଶେ ଶିଶୁ-ଶିକ୍ଷାର ଅଗ୍ରଗତି ବହୁ ସ୍ତର ମଧ୍ୟଦେଇ ଚାଲେ । ଶିଶୁ-ଜୀବନ-ପଥରେ ବିଭିନ୍ନ ସ୍ତର ହେଲା—ଅତି ଶୈଶବ-କାଳ (babyhood), ଶୈଶବକାଳ (childhood), ବାଲ୍ୟକାଳ (boyhood), କୈଶୋର ଓ ଯୌବନକାଳ (adolescence) ଏବଂ ଯୌବନୋତ୍ତରକାଳ (post-adolescence) । ଏହିସବୁ କାରଣରୁ ଆଜି ଶିକ୍ଷା କ୍ଷେତ୍ରରେ ବିଭିନ୍ନ ସ୍ତର ଦେଖା ଦେଇଛି ଯେପରି କିଣ୍ଡରଗାର୍ଟେନ୍, ପ୍ରାଇମେରୀ, ସେକେଣ୍ଡାରୀ ଓ ଉଚ୍ଚଶିକ୍ଷା । ପୁନଶ୍ଚ ଏହି ବିଭିନ୍ନ ସ୍ତରରେ ଶିକ୍ଷାର ପଦ୍ଧତି, ବିଷୟବସ୍ତୁ, ଉଦ୍ଦେଶ୍ୟ ଇତ୍ୟାଦି ମଧ୍ୟ ଭିନ୍ନ । ଏସବୁ ଛଡ଼ା ବି ବର୍ତ୍ତମାନ ଶିକ୍ଷା-ବ୍ୟବସ୍ଥାରେ ବ୍ୟକ୍ତି-ସ୍ୱାତନ୍ତ୍ର୍ୟ (individual differences) ଶିଶୁର ବଂଶାନୁବର୍ତ୍ତନ, ପରିବେଶ, ବୁଦ୍ଧିର ତାରତମ୍ୟ ଇତ୍ୟାଦି ନାନା ବିଷୟର ଆଲୋଚନା କରାଯାଉଛି ।

ପାଶ୍ଚାତ୍ୟ ଶିକ୍ଷାରେ ଏକ ଗୁରୁତର ପରିବର୍ତ୍ତନ ଦେଖାଦେଲା ଡାକ୍ତର ଫ୍ରୟେଡ୍‌ଙ୍କର ମନସ୍ତତ୍ତ୍ୱଗତ ଆବିଷ୍କାର ଫଳରେ । ଡାକ୍ତର ଫ୍ରୟେଡ୍ ମାନବ ମନର ଯେଉଁ ରହସ୍ୟ ଉଦ୍‌ଘାଟନ କଲେ ତାହା

ଆଧୁନିକ ଯୁଗର ଶିକ୍ଷା, ସଂସ୍କୃତି, କଳା ଓ ସାହିତ୍ୟ-କ୍ଷେତ୍ରରେ ଯୁଗାନ୍ତରକାରୀ ବିପ୍ଲବ ସୃଷ୍ଟି କରିଛି । ଫ୍ରୟେଡ୍ ମାନବ-ମନକୁ ଗୋଟାଏ ଭାସମାନ ହିମଶୈଳ (Iceberg) ସଙ୍ଗେ ତୁଳନା କରିଛନ୍ତି । ଭାସମାନ ହିମଶୈଳର ବେଶୀ ଭାଗ ଯେପରି ଜଳ ମଧ୍ୟରେ ବୁଡ଼ି ରହିଥାଏ ଏବଂ ଉପରକୁ ଅତି ସାମାନ୍ୟ ଅଂଶ ମାତ୍ର ଦେଖା ଯାଉଥାଏ, ସେହିପରି ମାନବ-ମନର ଦଶଭାଗରୁ ନଅଭାଗ ଅବଚେତନ (Sub-conscious) ଓ ଏକଭାଗହିଁ ଚେତନ (Conscious) । ମନୁଷ୍ୟର ଯାବତୀୟ ଅନ୍ଧକାରମୟ କାମନା, ବାସନା, ପ୍ରବୃତ୍ତି, ପ୍ରେରଣା, ସମ୍ବୋଧି, ଉପଲବ୍ଧି ଓ ଗୂଢ଼ତର ଲକ୍ଷ୍ୟ ଇତ୍ୟାଦି ଏହି ଅବଚେତନା ମନର ବିଷୟବସ୍ତୁ । ଡାକ୍ତର ଫ୍ରୟେଡ୍ ଏହା ବି ସ୍ପଷ୍ଟ କରିଥିଲେ ଯେ ମାନବ ବ୍ୟକ୍ତିତ୍ୱର ପୂର୍ଣ୍ଣ ବିକାଶ କେବଳ ଏହି ଅବଚେତନାଦ୍ୱାରାହିଁ ନିୟନ୍ତ୍ରିତ ହୋଇଥାଏ । ପୂର୍ବରୁ ମନୁଷ୍ୟର ସାମାନ୍ୟ ଉପରିଭାଗ ମନକୁ ବ୍ୟକ୍ତିତ୍ୱର ଶେଷ କଥା ବୋଲି ଧରିଯାଇ ମାନବ ବ୍ୟକ୍ତିତ୍ୱର ଯେଉଁ ବିଚାର କରାଯାଉ ଥିଲା ତାହାର ମୂଳରେ ଡାକ୍ତର ଫ୍ରୟେଡ୍ଙ୍କ ଅବଚେତନା-ମନସ୍ତତ୍ତ୍ୱ (depth-psychology) କୁଠାରାଘାତ କଲା । ଦେଖାଗଲା ମାନବ-ବ୍ୟକ୍ତିତ୍ୱ ବଡ଼ ଜଟିଳ, ବଡ଼ ଅସଂହତ, ବିଭକ୍ତ ଏବଂ ପରସ୍ପର ବିରୋଧୀ ବସ୍ତୁ ଓ ସତ୍ତାରେ ପୂର୍ଣ୍ଣ । ମନୁଷ୍ୟ ଜୀବନରେ ସଙ୍ଗତି, ସମନ୍ୱୟ ଓ ସର୍ବାଙ୍ଗୀନ ଉନ୍ନତି ଆଣିବା ଏକ ଅତି କଠିନ ବ୍ୟାପାର । ଏଥିପାଇଁ ସର୍ବାଦୌ ଆବଶ୍ୟକ ଅବଚେତନା-ମନର ଆବିଷ୍କାର, ଶୁଦ୍ଧିକରଣ (purification) ଏବଂ ନିୟନ୍ତ୍ରଣ । ଡାକ୍ତର ଫ୍ରୟେଡ୍ଙ୍କ ଏହି ମହନୀୟ ଓ ଗୁରୁତ୍ୱପୂର୍ଣ୍ଣ ଆବିଷ୍କାର ଆଜି ପାଶ୍ଚାତ୍ୟ ଚିନ୍ତାଧାରାକୁ କିପରି ଗଭୀର ଭାବରେ ପ୍ରଭାବିତ କରିଛି ତାହା ଏଠାରେ ବର୍ଣ୍ଣନା କରାଯାଇ ପାରିବନାହିଁ । କିନ୍ତୁ ଯଦିଓ

ଡାକ୍ତର ଫ୍ରୟଡ୍‌ଙ୍କ ଅବଚେତନା-ମନର ଆବିଷ୍କାର ଫଳରେ ମାନବ-ବ୍ୟକ୍ତିତ୍ୱର ବିଗ୍ରହ-ଦୃଷ୍ଟି-ଭଙ୍ଗୀ ପରିବର୍ତ୍ତିତ ହେଲା, ତଥାପି ଏହି ଅବଚେତନାର ଶୁଦ୍ଧିକରଣର କୌଣସି ବିଶେଷ ଉପାୟ ଏ ପର୍ଯ୍ୟନ୍ତ ପାଶ୍ଚାତ୍ୟ ଶିକ୍ଷାବିଦ୍‌ଗଣ ପାଇ ପାରିନାହାନ୍ତି । କି ଉପାୟରେ ଏହି ଅବଚେତନା ଯେ ନିୟନ୍ତ୍ରିତ ଓ ବିଧିବଦ୍ଧଭାବେ ଶାସିତ ହେବ ତାହା ମଧ୍ୟ ପାଶ୍ଚାତ୍ୟ ଶିକ୍ଷାବିଦ୍‌ଗଣ ଠିକ୍ କରି ପାରିନାହାନ୍ତି । ପୁନଶ୍ଚ ଏହି ଅବଚେତନା ମାନବ-ବ୍ୟକ୍ତିତ୍ୱର ମୂଳ ବା ଶେଷ କଥା ନୁହେଁ,—ଏହା ମଧ୍ୟ ଆଜି ସ୍ୱୀକୃତ ହେଉଛି । ମାନବ-ବ୍ୟକ୍ତିତ୍ୱର ଆହୁରି ବହୁ ଜଟିଳତର ଓ ସୂକ୍ଷ୍ମତର ବିଭାଗ ଅଛି ଯାହାର ମୂଳ ସୂତ୍ର ଏବେ ବି ପାଶ୍ଚାତ୍ୟ ମନସ୍ତତ୍ତ୍ୱବିଦ୍‌ଗଣ ଧରି ପାରିନାହାନ୍ତି । ଅବଶ୍ୟ ଡାକ୍ତର ଫ୍ରୟଡ୍‌ଙ୍କ ଶିଷ୍ୟ ସୁବିଖ୍ୟାତ ମନସ୍ତତ୍ତ୍ୱବିଦ୍ ସି. ଜି. ୟୁଙ୍ଗ୍ (C. G. Yung) ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରିଛନ୍ତି । ଡାକ୍ତର ୟୁଙ୍ଗ୍‌ଙ୍କ ମତରେ ମାନବ-ବ୍ୟକ୍ତିତ୍ୱର ଯେଉଁ ମୂଳକେନ୍ଦ୍ର ଅଛି ତାହାହିଁ ହେଲା ଏକ ଚୈତ୍ୟ-ସତ୍ତା (psychic) ଏବଂ ବ୍ୟକ୍ତିତ୍ୱର ସଂଗଠନ ଓ ସମନ୍ୱୟ-ସାଧନ ଏହି ଚୈତ୍ୟ-ସତ୍ତାଦ୍ୱାରାହିଁ ସାଧିତ ହେବ । ଡାକ୍ତର ୟୁଙ୍ଗ୍ କହିଛନ୍ତି—

"If we survey the situation as a whole, we come to the inevitable conclusion—at least in my opinion—that a psychic element is present that expresses itself through the tetrad. This conclusion demands neither daring speculation nor extravagant phantasy. I have called the centre 'Self', I did so after ripe reflection and a careful assessment of the data of experience as well as of history." *

---

* C. G. Yung. *Integration of Personality*, pp. 197.

ଅର୍ଥାତ୍, "ଯଦି ଆମ୍ଭେମାନେ ମାନବ-ବ୍ୟକ୍ତିତ୍ୱ ପ୍ରତି ପୂର୍ଣ୍ଣଦୃଷ୍ଟି ଦେଉ, ତେବେ ଆମ୍ଭେମାନେ ଏହି ଅବଶ୍ୟମ୍ଭାବୀ ସିଦ୍ଧାନ୍ତରେ ଉପନୀତ ହେବା ଯେ (ଅନ୍ତତଃ ମୋ ନିଜ ମତରେ) ଗୋଟିଏ ଚୈତ୍ୟ-ସତ୍ତା ବ୍ୟକ୍ତିତ୍ୱ ମଧ୍ୟରେ ରହିଅଛି ଏବଂ ଏହାହିଁ ଚତୁର୍ବିଧ ଉପାୟରେ ନିଜକୁ ବ୍ୟକ୍ତ କରୁଅଛି । ଏହି ସିଦ୍ଧାନ୍ତରେ ଉପନୀତ ହେବା ପାଇଁ କୌଣସି ସାହସିକ ଭାବନା, ବା ଚମକପ୍ରଦ କଳ୍ପନା-ଜଳ୍ପନାର ଆବଶ୍ୟକତା ନାହିଁ । ବ୍ୟକ୍ତିତ୍ୱର ଏହି କେନ୍ଦ୍ରକୁ ମୁଁ ଆତ୍ମ-ସତ୍ତା ବୋଲି କହୁଛି, ଅବଶ୍ୟ ଏହା ମୁଁ କହୁଛି ବହୁ ଧୀର-ସ୍ଥିର ଚିନ୍ତନ ପରେ ଏବଂ ଉପଲବ୍ଧି ଓ ଇତିହାସରୁ ମିଳିଥିବା ବହୁବିଧ ବସ୍ତୁର ତନ୍ନ-ତନ୍ନ ସମୀକ୍ଷାପରେ ।" ଡାକ୍ତର ୟୁଙ୍ଗ୍‌ଙ୍କର ଏହି ଗମ୍ଭୀର ଓ ମୂଲ୍ୟବାନ୍ ଘୋଷଣା ପାଶ୍ଚାତ୍ୟ ମନସ୍ତତ୍ତ୍ୱବିତ୍‌ଙ୍କୁ ଏକ ନୂତନ ପଥର ସନ୍ଧାନ ଦେଇଛି ।

ଏସବୁ ସତ୍ତ୍ୱେ ପାଶ୍ଚାତ୍ୟ ମନୋବିଜ୍ଞାନର ଆବିଷ୍କାର ଓ କାର୍ଯ୍ୟକଳାପ ଭାରତୀୟ ଯୋଗ-ମନସ୍ତତ୍ତ୍ୱ ନିକଟରେ ଅତି ସାମାନ୍ୟ ମାତ୍ର । ଭାରତୀୟ ଯୋଗ-ମନସ୍ତତ୍ତ୍ୱବିଦ୍‌ଗଣ ଯୁଗ ଯୁଗ ଧରି ସାଧନା ଓ ତପସ୍ୟା ବଳରେ ମାନବ ମନ ଓ ବ୍ୟକ୍ତିତ୍ୱର ଯେଉଁ ଗମ୍ଭୀର ଅମର ସତ୍ୟତତ୍ତ୍ୱ ଆବିଷ୍କାର କରିଛନ୍ତି ତାହା ବାସ୍ତବରେ ଏକ ବିସ୍ମୟକର ବ୍ୟାପାର । ପ୍ରାଚୀନ ଯୋଗୀ ଋଷିଗଣ ମାନବ ଆଧାରର ବିଭିନ୍ନ ବିଭାଗର ଭିନ୍ନଭିନ୍ନ ଆଲୋଚନା କରି ପ୍ରତ୍ୟେକଟିର ଶୁଦ୍ଧି-କରଣ, ନିୟନ୍ତ୍ରଣ ଓ ଶାସନ ନିମିତ୍ତ ଉପାୟମାନ ଆବିଷ୍କାର କରି-ଥିଲେ । ଶ୍ରୀଅରବିନ୍ଦ ସ୍ୱୀୟ ଅନୁଭବ, ଦୃଷ୍ଟି ଓ ଅଧ୍ୟାତ୍ମ ଉପଲବ୍ଧି ବଳରେ ମନୁଷ୍ୟ ସତ୍ତାର ଗଭୀରତମ ତଥ୍ୟତତ୍ତ୍ୱ ଆବିଷ୍କାର କରି ପ୍ରାଚୀନ ଯୋଗୋପଲବ୍ଧ ସତ୍ୟଗୁଡିକର ଯେପରି ପୁନରୁଦ୍ଧାର

କରିଛନ୍ତି ତାହା ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । କିନ୍ତୁ ଶ୍ରୀଅରବିନ୍ଦଙ୍କ ଯୋଗ-ଦର୍ଶନ ପ୍ରାଚୀନ ଯୋଗ-ପଦ୍ଧତିର ପୁନରାବୃତ୍ତି ନୁହେଁ । ଶ୍ରୀଅରବିନ୍ଦ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ମନସ୍ତତ୍ତ୍ୱର ସୀମା ଅତିକ୍ରମ କରି ଅନ୍ୟ ଏକ ବ୍ୟାପକ ସ୍ଥଳରେ ପହଞ୍ଚିଛନ୍ତି ।

ଶ୍ରୀଅରବିନ୍ଦ ଫ୍ରଏଡ଼୍‌ଙ୍କ ଅବଚେତନ ମନକୁ ମାନବ ବ୍ୟକ୍ତିତ୍ୱର ଶେଷ କଥା ବୋଲି ଧରି ନାହାନ୍ତି, ବରଂ ଶ୍ରୀଅରବିନ୍ଦଙ୍କ ଭାଷାରେ, "ଆଧୁନିକ ମନୋବିଜ୍ଞାନ ସକଳ ବିଦ୍ୟା ମଧ୍ୟରେ ନବ-ଜାତ ଶିଶୁ, ଏକାଧାରରେ ଦୁଃସାହସୀ, ଅନିଶ୍ଚିତ ଓ ଅତି ସ୍ଥୂଳ ।" ଆଧୁନିକ ମନୋବିଜ୍ଞାନର ସବୁଠାରୁ ବଡ଼ ଭୁଲ ଏହି ଯେ ଏହା ମନୁଷ୍ୟ ବ୍ୟକ୍ତିତ୍ୱର କୌଣସି ଗୋଟାଏ ଅଂଶକୁ ତାହାର ସମଗ୍ର ସତ୍ତା ବୋଲି ଗ୍ରହଣ କରେ । ଶ୍ରୀଅରବିନ୍ଦ ମନର ଏହି ଅବଚେତନ ଅଂଶକୁ ମଗ୍ନ ଚେତନା (Subliminal) ବା ଅଧି-ଚେତନ ଆଖ୍ୟା ଦେଇଛନ୍ତି । ଯୋଗାଧାର ପୁସ୍ତକରେ ଶ୍ରୀଅରବିନ୍ଦ ଲେଖିଛନ୍ତି, "ଏକଥା ସତ୍ୟ ଯେ ମନୁଷ୍ୟର ଅଧି-ଚେତନ ତାହାର ପ୍ରକୃତିର ବୃହତ୍ତମ ଅଂଶ ଏବଂ ଯେଉଁସବୁ ଅଦୃଶ୍ୟ ଶକ୍ତିର ବେଗ ତାହାର ବାହ୍ୟ କ୍ରିୟାବଳୀର ମୂଳରେ ରହିଅଛି ତାହାର ଗୋପନ ରହସ୍ୟ ଏଠାରେ ରହିଛି । କିନ୍ତୁ ଫ୍ରଏଡ଼୍‌ଙ୍କ ଚିତ୍ତ-ବିଶ୍ଳେଷଣ ବିଦ୍ୟା (psycho-analysis) କେବଳ ନିମ୍ନ-ପ୍ରାଣର ଅବଚେତନାକୁ ଜାଣେ ବୋଲି ମନେ ହୁଏ— ପୁଣି ତା ମଧ୍ୟରୁ କେବଳ କେତୋଟି ଅନ୍ଧକାରମୟ ଚେତନାକୁ ଜାଣେ—ଯାହା ସମସ୍ତ ଅଧି-ଚେତନାର ଗୋଟିଏ ଅତି କ୍ଷୁଦ୍ର ଓ ନଗଣ୍ୟ ଅଂଶ ମାତ୍ର । ଅଧି-ଚେତନ ସତ୍ତା (Subliminal being) ପଶ୍ଚାତରୁ ସମଗ୍ର ବାହ୍ୟ ମନୁଷ୍ୟକୁ ଧାରଣ କରିଅଛି । ଆମର ବାହ୍ୟ ମନର ପଛରେ ରହିଅଛି ଗୋଟାଏ ଅଧିକତର କାର୍ଯ୍ୟକ୍ଷମ ବୃହତ୍ତର

ମନ, ସେହିପରି ବାହ୍ୟ ପ୍ରାଣ ଓ ସ୍ଥୂଳ ଶରୀରର ପଶ୍ଚାତରେ ରହି- ଅଛି ଏକ ବିଶାଳତର ପ୍ରାଣ ଓ ଗୋଟିଏ ସୂକ୍ଷ୍ମତର ଓ ମୁକ୍ତତର ଶାରୀର-ଚେତନା । ପୁନଶ୍ଚ ଏହି ଅଧି-ଚେତନଟିଁ ଏହି ସବୁର ଊର୍ଦ୍ଧ୍ୱରେ ଉଚ୍ଚତର ପରା-ଚେତନା ସଙ୍ଗେ ଏବଂ ଏହି ସବୁର ନିମ୍ନସ୍ଥ ଅବଚେତନାର ସ୍ତରସମୂହ ଆଡ଼କୁ ନିଜକୁ ଖୋଲି ରଖିଛି । ଯଦି କେହି ପ୍ରକୃତିର ଶୁଦ୍ଧ ରୂପାନ୍ତର କରିବାକୁ ଚାହେଁ, ତେବେ ଏହି ଊର୍ଦ୍ଧ୍ୱ ଭୂମିର ଶକ୍ତିଙ୍କ ପାଖେ ନିଜକୁ ଖୋଲି ଧରିବାକୁ ହେବ ଏବଂ ଅନ୍ତଃସ୍ଥଳ ଓ ବହିଃସ୍ଥଳ ଉଭୟ ସତ୍ତ୍ୱକୁ ସେମାନଙ୍କ ପାଖରେ ଉଠେଇ ଧରି ପରିବର୍ତ୍ତିତ କରିବାକୁ ହେବ ।" ମାନବ-ବ୍ୟକ୍ତିତ୍ୱର ଏହି ନିଗୂଢ଼ ତତ୍ତ୍ୱର ଉଦ୍‌ଘାଟନ ଏବଂ ସେସବୁର ଯଥାର୍ଥ ପରିବର୍ତ୍ତନର ପନ୍ଥା ଆବିଷ୍କାର ଶ୍ରୀଅରବିନ୍ଦଙ୍କ ଯୋଗ-ଦର୍ଶନର ଏକ ଅତୁଳନୀୟ ଦାନ । ମାନବ-ବ୍ୟକ୍ତିତ୍ୱର ସର୍ବାଙ୍ଗୀନ ସମନ୍ୱୟ (Integration) ଏବଂ ଉନ୍ନତି ସାଧନ ଯେ କି ଜଟିଳ ବ୍ୟାପାର ତାହା ଶ୍ରୀଅରବିନ୍ଦଙ୍କ ଉପର୍ଯ୍ୟୁକ୍ତ ଉକ୍ତିରୁ ସ୍ପଷ୍ଟ ପ୍ରତୀୟମାନ ହେବ । ସୁତରାଂ ପାଶ୍ଚାତ୍ୟ ଶିକ୍ଷା-ପ୍ରଣାଳୀର ମୂଳ ଆଦର୍ଶ ଅର୍ଥାତ୍ ମାନବ-ବ୍ୟକ୍ତିତ୍ୱର ସୁସମ- ଞ୍ଜସ ବିକାଶ ଏବଂ ପରିଣତି ଠିକ୍ ଥିଲେ ସୁଦ୍ଧା ମାନବ ମନ ଓ ବ୍ୟକ୍ତିତ୍ୱର ଯଥାର୍ଥ ଜ୍ଞାନ, ତାର ସମନ୍ୱୟୀକରଣର ପଦ୍ଧତି ଅସମ୍ପୂର୍ଣ୍ଣ ଓ ଭ୍ରାନ୍ତିଜଡ଼ିତ ।

## ପ୍ରାଚୀନ ଭାରତୀୟ ଶିକ୍ଷା :

ବର୍ତ୍ତମାନ ପ୍ରାଚୀନ ଭାରତର ଶିକ୍ଷା-ପଦ୍ଧତି ସମ୍ବନ୍ଧରେ କିଞ୍ଚିତ୍ ଆଲୋଚନା କରିବା । ପ୍ରାଚୀନ ଭାରତୀୟ ଶିକ୍ଷାର ମୂଳ ଭିତ୍ତି ଧର୍ମ ଉପରେ ପ୍ରତିଷ୍ଠିତ । ଧର୍ମ ଓ ଆଧ୍ୟାତ୍ମିକତା ପ୍ରାଚୀନ ଭାରତରେ

ସବୁ ସ୍ଥଳରେ ପ୍ରୟୋଗ କରାହୋଇ ଏକ ସଂହତ ଓ ବଳଶାଳୀ ସମାଜ ସ୍ଥାପିତ ହୋଇଥିଲା । ଭାରତୀୟ ସମାଜନୀତି, ରାଜନୀତି, ଅର୍ଥନୀତି, ସାହିତ୍ୟ, କଳା, ସ୍ଥାପତ୍ୟ ଓ ଦର୍ଶନ ସବୁକିଛି ପ୍ରାଚୀନ କାଳରେ ଧର୍ମ ଉପରେ ପ୍ରତିଷ୍ଠିତ ଥିଲା । କିନ୍ତୁ ଏହି ଧର୍ମହିଁ ଥିଲା ସାର୍ବଜନୀନ ଅଧ୍ୟାତ୍ମଭାବପୂର୍ଣ୍ଣ ସନାତନ ଧର୍ମ । ଏହା କୌଣସି ମନ୍ଦିର ବା ବ୍ୟକ୍ତି ବିଶେଷ ଉପରେ ନିର୍ଭର କରୁ ନଥିଲା । ଏକ ଦିଗରେ ଧର୍ମ ହେଉଛି ଆତ୍ମାନ୍ୱେଷଣର ପଥ, ଅନ୍ୟ ଦିଗରେ ବିଶ୍ୱଜଗତ ସହିତ ମନୁଷ୍ୟର ସୁଦୃଢ଼ ସମ୍ବନ୍ଧ ସ୍ଥାପନର ପୃଷ୍ଠଭୂମିକା । ସେଥିପାଇଁ ପ୍ରାଚୀନ ଭାରତୀୟ ଶିକ୍ଷା-ପ୍ରଣାଳୀ ଧର୍ମ-ମୂଳକ ଥିଲା ।

ବୈଦିକଯୁଗରେ ଉପନୟନ ପରେ ଶିକ୍ଷା ଆରମ୍ଭ ହେଉଥିଲା । ଉପନୟନହିଁ ଥିଲା ଛାତ୍ର ଜୀବନର ପ୍ରବେଶ ପଥ । ଏହାପରେ ଛାତ୍ର ଗୁରୁଙ୍କ ସହିତ ବ୍ରହ୍ମଚର୍ଯ୍ୟାଶ୍ରମରେ ବାସ କରୁଥିଲେ । ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଛାତ୍ରମାନଙ୍କର ଯଥାକ୍ରମେ ୯, ୧୧, ୧୨ ବୟସରେ ଉପନୟନ ଉତ୍ସବ ଅନୁଷ୍ଠିତ ହେଉଥିଲା । ଗୁରୁଙ୍କ ଗୃହରେ ଛାତ୍ରଙ୍କୁ ପ୍ରାୟ ପଚିଶ ବର୍ଷ ପର୍ଯ୍ୟନ୍ତ ରହିବାକୁ ପଡ଼ୁଥିଲା । ଏହାପରେ ସାଧାରଣ ଛାତ୍ରମାନଙ୍କ ଶିକ୍ଷା ସମାବର୍ତ୍ତନ ଉତ୍ସବରେ ସମାପ୍ତ ହେଉଥିଲା । ଏହି ଶିକ୍ଷାର ବିଶିଷ୍ଟ ଲକ୍ଷ୍ୟ ଥିଲା ବ୍ୟକ୍ତିତ୍ୱର ଯଥାଯଥ ବିକାଶ, ଚରିତ୍ର-ଗଠନ ଓ ମୋକ୍ଷଲାଭ । ଅବଶ୍ୟ ବୈଦିକଯୁଗରେ ଏହି ମୋକ୍ଷଲାଭର ଅର୍ଥ ଜଗତକୁ ବର୍ଜ୍ଜନ କରି ବା ତ୍ୟାଗ କରି ଭଗବତ୍ ଅନୁସନ୍ଧାନରେ ଲିପ୍ତ ହେବା ନ ଥିଲା । ଧର୍ମ, ଅର୍ଥ, କାମ, ମୋକ୍ଷ, ଏହି ଚାରୋଟିହିଁ ପୁରୁଷାର୍ଥ ଥିଲା ଯଦିଓ ଏହା ମଧ୍ୟରେ ମୋକ୍ଷ-ବର୍ଗହିଁ ସର୍ବୋତ୍କୃଷ୍ଟ ବୋଲି ବିବେଚିତ ହେଉଥିଲା । ଏହି କାରଣରୁ ପ୍ରାଚୀନ ଭାରତର ଶିକ୍ଷାରେ ଐହିକ ଜୀବନକୁ ସାର କଥା ବୋଲି ଧରା ନ

ଯାଇ ମୃତ୍ୟୁ ରହସ୍ୟକୁ ଭେଦ କରି ପର-ଜୀବନର ତତ୍ତ୍ୱ ଆବିଷ୍କାର କରିବାକୁ ଉଦ୍ୟମ କରାଯାଇଥିଲା । ସୁତରାଂ ଶିକ୍ଷା କ୍ଷେତ୍ରରେ ଆଧ୍ୟାତ୍ମିକ ଉନ୍ନତି ସକାଶେ ବ୍ୟାପକ ଚେଷ୍ଟା ହୋଇଥିଲା । ଅବଶ୍ୟ ବୈଦିକ ଋଷିଗଣ ଆଧ୍ୟାତ୍ମିକ ଚେତନାଦ୍ୱାରା ଜୀବନର ଉନ୍ନତି ଓ ସମୃଦ୍ଧି ପାଇଁ ଅଳ୍ପ ଚେଷ୍ଟା କରି ନ ଥିଲେ । ଏହି ସମୟରେ ରାଜକୁମାରମାନେ ମଧ୍ୟ ଋଷି ଆଶ୍ରମରେ ରହି ଶିକ୍ଷା କରୁଥିଲେ ।

ବୌଦ୍ଧଯୁଗରେ ପ୍ରାୟ ମୋଟାମୋଟି ଏହି ପ୍ରକାର ଶିକ୍ଷା ପ୍ରଚଳିତ ଥିଲା ଯଦିଓ କେତେକ ପରିବର୍ତ୍ତନ ଆସି ଥିଲା । ବୌଦ୍ଧ-ଯୁଗରେ ଶିକ୍ଷା ଅଧିକ ଗଣତାନ୍ତ୍ରିକ ଥିଲା ଏବଂ ବିଦ୍ୟାଳୟର ଦ୍ୱାର ସକଳଙ୍କ ସକାଶେ ଉନ୍ମୁକ୍ତ ଥିଲା । ଦ୍ୱିତୀୟତଃ ଶିକ୍ଷା ପ୍ରଣାଳୀ ଅନେକ ପରିମାଣରେ ଧର୍ମ-ନିରପେକ୍ଷତା ଉପରେ ପ୍ରତିଷ୍ଠିତ ଥିଲା । ଶିକ୍ଷାର କ୍ଷେତ୍ର, ପୁନଶ୍ଚ ଗୁରୁ ଗୃହ ନ ହୋଇ ବିହାର ବା ମଠ ହେଲା । ଏହି ସମୟରେ ବିଶ୍ୱ ବିଖ୍ୟାତ ନାଳନ୍ଦା, ତକ୍ଷଶୀଳା ଓ ପୁଷ୍ପଗିରି ପ୍ରଭୃତି ବିଶ୍ୱବିଦ୍ୟାଳୟ ଗଢ଼ି ଉଠିଥିଲା । ଚତୁର୍ଥତଃ ସ୍ତ୍ରୀ-ଶିକ୍ଷାର ପ୍ରଚଳନ ମଧ୍ୟ ବିଶେଷ ପରିମାଣରେ ହେଲା । ବୌଦ୍ଧ ଧର୍ମର ସାର୍ବଜନୀନ ମୈତ୍ରୀ ଓ ଭ୍ରାତୃଭାବ ଫଳରେ ଦେଶରେ ଅନ୍ତ ର୍ଜାତୀୟ ସ୍ତରରେ ଶିକ୍ଷା ପ୍ରସାର ଲାଭ କରିଥିଲା । କିନ୍ତୁ ଏହି ଶିକ୍ଷା ଓ ଧର୍ମ ପ୍ରଚାରର ଉଦ୍ଦେଶ୍ୟ ଥିଲା ମୁକ୍ତି ବା ନିର୍ବାଣ ଲାଭ । ଆଧ୍ୟାତ୍ମିକ ଉନ୍ନତି ସଙ୍ଗେ ସଙ୍ଗେ ପାର୍ଥିବ ଉନ୍ନତିକୁ ସମାନଭାବେ ଧରାଯାଇ ପାରିଲା ନାହିଁ । ଏହିଠାରେହିଁ ସଂସାର ଓ ଆଧ୍ୟାତ୍ମିକତା ମଧ୍ୟରେ ପାର୍ଥକ୍ୟ ଆସିଗଲା ଏବଂ ପାର୍ଥିବ ଜୀବନ ଓ ଅଧ୍ୟାତ୍ମ-ଜୀବନ ମଧ୍ୟରେ କୌଣସି ପ୍ରକାର ସାମଞ୍ଜସ୍ୟ ରହିପାରିଲା ନାହିଁ, କ୍ରମଶଃ ଏହି ବିଭେଦ ବଢ଼ି ଚାଲିଲା ଏବଂ ମଧ୍ୟଯୁଗରେ "ମାୟାବାଦର" ପ୍ରଚାର ଫଳରେ

ସଂସାରକୁ ମାୟା ଓ ମିଥ୍ୟା ବୋଲି ବର୍ଜ୍ଜନ କରି ଏକମାତ୍ର ଅଧ୍ୟାତ୍ମ ସାଧନାରେ ରତ ହେବାହିଁ ଶ୍ରେଷ୍ଠ ଆଦର୍ଶରୂପେ ଦେଖାଦେଲା । ଦେଶର ସର୍ବାଙ୍ଗୀଣ ଉନ୍ନତି ଓ ସମୃଦ୍ଧି ଏହିଠାରେ ବ୍ୟାହତ ହେଲା । କ୍ରମଶଃ ଦେଶରୁ କର୍ମ-ପ୍ରବଣତା, ଭୌତିକ ପୂର୍ଣ୍ଣତା ଲୋପ ପାଇବାକୁ ବସିଲା ଏବଂ ଦେଶ ଅନ୍ଧକାର ଗର୍ଭରେ ପତିତ ହେଲା । ଏହି ଅନ୍ଧକାର ଯୁଗର ଶେଷ ଭାଗରେ ଭାରତବର୍ଷ ଇଂରେଜମାନଙ୍କ କବଳରେ ପଡିଲା । ଇଂରେଜ-ରାଜତ୍ୱ କାଳରେ ଶିକ୍ଷା-ଦୀକ୍ଷା ଦିଗରେ ଭାରତବର୍ଷ ଅନେକ ପଛରେ ପଡ଼ି ରହିଲା ଏବଂ ସମଗ୍ର ଦେଶ ଏକ ଊଷର ଭୂମି ପ୍ରାୟ ପ୍ରତୀୟମାନ ହେଲା । ଏହି ସମୟରେ ଭଗବତ୍ ବିଧାନାନୁସାରେ ଭାରତ ସ୍ୱୀୟ ଆତ୍ମବଳ ଓ ତପୋବଳରେ ଜାଗ୍ରତ ହେଲା ଏବଂ ପ୍ରତ୍ୟେକ କ୍ଷେତ୍ରରେ ଦେଖା ଦେଲା ଏକ ନବଯୁଗ ।

## ଶିକ୍ଷା-କ୍ଷେତ୍ରରେ ଭାରତର ଜାଗରଣ :

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ବହୁ ମହାପୁରୁଷ ଜନ୍ମ ଗ୍ରହଣ କରି ଭାରତର ଗୌରବମୟ ଐତିହ୍ୟ, ମହାନ୍ ସଂସ୍କୃତି ଓ ପରମ୍ପରାର ପୁନରୁଦ୍ଧାର କରିବାକୁ ଲାଗିପଡ଼ିଲେ । ଅଧ୍ୟାତ୍ମ-କ୍ଷେତ୍ରରେ ଶ୍ରୀରାମକୃଷ୍ଣ ପରମହଂସ, ସ୍ୱାମୀ ବିବେକାନନ୍ଦ, ଜାତୀୟତାର କ୍ଷେତ୍ରରେ ବାଳଗଙ୍ଗାଧର ତିଳକ, ଲାଲା ଲାଜପତ୍‌ରାୟ, ବିପିନ୍ ପାଲ୍, ମହାତ୍ମା ଗାନ୍ଧୀ, ଶ୍ରୀଅରବିନ୍ଦ, ସାହିତ୍ୟ-କ୍ଷେତ୍ରରେ ରବୀନ୍ଦ୍ରନାଥ, ବଙ୍କିମଚନ୍ଦ୍ର ପ୍ରଭୃତି ସୁନାମଧନ୍ୟ ବ୍ୟକ୍ତିଗଣ ନିଜର ଦେଶ-ବତ୍ସଳତା ଓ ଜାତୀୟ-ପ୍ରୀତି ଦ୍ୱାରା ସମଗ୍ର ଦେଶରେ ଏକ ନବ ଜାଗରଣ ଆଣିଦେଲେ । ଏହି ସମୟରେ ଜାତୀୟ ଶିକ୍ଷା-କ୍ଷେତ୍ରରେ ମଧ୍ୟ କିଛି କାର୍ଯ୍ୟ ଆରମ୍ଭ ହୋଇ ଯାଇଥିଲା । ଶିକ୍ଷା-କ୍ଷେତ୍ରରେ ଯେଉଁମାନେ ବିଶେଷତଃ କାର୍ଯ୍ୟ

କରିଅଛନ୍ତି, ସେମାନଙ୍କ ମଧ୍ୟରେ ମହାତ୍ମା ଗାନ୍ଧୀ, ବିଶ୍ୱକବି ରବୀନ୍ଦ୍ରନାଥ ଓ ଶ୍ରୀଅରବିନ୍ଦଙ୍କ ନାମ ଉଲ୍ଲେଖଯୋଗ୍ୟ । ମହାତ୍ମାଙ୍କ ପ୍ରବର୍ତ୍ତିତ ମୌଳିକ ଶିକ୍ଷା-ପଦ୍ଧତି (Basic Education) ଆଜି ଭାରତ ସରକାର ବିଭିନ୍ନ କ୍ଷେତ୍ରରେ ପ୍ରୟୋଗ କରିଅଛନ୍ତି । ବିଶେଷତଃ ଶିଶୁ-ଶିକ୍ଷା-କ୍ଷେତ୍ରରେ ଏହାର ବହୁଳ ପ୍ରସାର ହୋଇଛି । ରବୀନ୍ଦ୍ରନାଥଙ୍କ ପ୍ରବର୍ତ୍ତିତ ନୂତନ ଶିକ୍ଷା-ପଦ୍ଧତିର ସ୍ୱରୂପ ଆଜି କିଛି ପରିମାଣରେ ଶାନ୍ତିନିକେତନରେ ଦେଖିବାକୁ ମିଳେ । ଏ ସବୁ ପ୍ରତ୍ୟେକ ବିଷୟରେ ଏଠାରେ ଆଲୋଚନାର ଅବସର ନାହିଁ । କେବଳ ଶ୍ରୀଅରବିନ୍ଦ ଓ ଶ୍ରୀମା'ଙ୍କ ପ୍ରବର୍ତ୍ତିତ ଶିକ୍ଷା-ବିଧିର କେତେକ ଦିଗ ଆଲୋଚନା କରିବା ।

## ସର୍ବାଙ୍ଗୀନ ଶିକ୍ଷାର ଦୃଷ୍ଟିକୋଣ :

ଶ୍ରୀଅରବିନ୍ଦ ଓ ଶ୍ରୀମା'ଙ୍କ ଶିକ୍ଷା-ଦର୍ଶନ ମୂଳତଃ ତାଙ୍କର ଆଧ୍ୟାତ୍ମିକ ଯୋଗ-ଦର୍ଶନ ଉପରେ ପ୍ରତିଷ୍ଠିତ । ଶ୍ରୀଅରବିନ୍ଦ ସ୍ୱୀୟ ଦିବ୍ୟ-ଦୃଷ୍ଟି ବଳରେ ମାନବ-ଜୀବନର ଯେଉଁ ଗଭୀର ତତ୍ତ୍ୱରାଜି ଉଦ୍‌ଘାଟନ କରିଅଛନ୍ତି ତାହାହିଁ ତାଙ୍କ ଶିକ୍ଷା-ଦର୍ଶନର ମୂଳ-ଭିତ୍ତି । ଏଥିରେ ଦେଖିବାକୁ ମିଳେ ସମଗ୍ର ମାନବ-ଜୀବନ ଓ ସମଗ୍ର ସଂସାରର ସର୍ବାଙ୍ଗୀନ ରୂପ । ଶ୍ରୀଅରବିନ୍ଦ ଜୀବନ ଓ ସଂସାରର କୌଣସି ଦିଗକୁ ବାଦ ଦେଇ ନାହାଁନ୍ତି । ଆମ୍ଭେମାନେ ପ୍ରାୟ ଦେଖୁ ପ୍ରାଚୀନ ଭାରତର ଶିକ୍ଷା-ପଦ୍ଧତିରେ ବ୍ୟବହାରିକ ଜୀବନର ଉନ୍ନତି, ସମୃଦ୍ଧି ଓ ବୈଭବ ତୁଳନାରେ ଆଧ୍ୟାତ୍ମିକ ଜୀବନର ଉନ୍ନତି, ସିଦ୍ଧି ଓ ସାଫଲ୍ୟ ଉପରେ ବିଶେଷ ଜୋର୍ ଦିଆ ହୋଇଛି । ପରିଣାମରେ ଭାରତବର୍ଷରେ ଜୀବନର ମୂଲ୍ୟ-ବୋଧ ଏକତରଫା ହୋଇଯାଇଛି

ଏବଂ ବହିର୍ଜଗତ ସଙ୍ଗେ ଅନ୍ତର୍ଜଗତର ସାମଞ୍ଜସ୍ୟ ନଷ୍ଟ ହୋଇଯାଉଛି । ଅନ୍ୟ ଦିଗରେ ବର୍ତ୍ତମାନ ପ୍ରଚଳିତ ପାଶ୍ଚାତ୍ୟ ଶିକ୍ଷାରେ ବହିର୍ଜଗତ ଉପରେ ଅତ୍ୟଧିକ ଜୋର୍ ଦେବା ଫଳରେ ଅନ୍ତର୍ଜଗତ ସଙ୍ଗେ ତାହାର ସାମଞ୍ଜସ୍ୟ ରକ୍ଷା ହୋଇ ପାରୁନାହିଁ । ଆଧ୍ୟାତ୍ମିକ ଶିକ୍ଷାକୁ ବାଦ ଦେଇ ପାଶ୍ଚାତ୍ୟ ଦେଶ ନାନା ପ୍ରକାର ଯୁଦ୍ଧ, ବିଗ୍ରହ, ଦ୍ୱନ୍ଦ୍ୱ ଓ କଳହ ମଧ୍ୟରେ ପଡ଼ି ଆଜି ବର୍ବର ଓ ଆସୁରିକ ହୋଇଉଠିଛି । ପ୍ରାଚ୍ୟର ଶାନ୍ତ, ସ୍ନିଗ୍ଧ, ସମୁଜ୍ଜ୍ୱଳ, ଉଦାର ଆଧ୍ୟାତ୍ମିକ ମନୋଭାବ ସଙ୍ଗକୁ ରହିଛି ତାମସିକତା, ଦରିଦ୍ରତା ଓ କର୍ମହୀନତା; ଅନ୍ୟ ପକ୍ଷରେ ପାଶ୍ଚାତ୍ୟର ବହିର୍ମୁଖୀ ରାଜସିକ କର୍ମ-ପ୍ରବଣ ମନୋଭାବ ସଙ୍ଗକୁ ରହିଛି ସଂଘର୍ଷ, ଯୁଦ୍ଧ ଓ ଆସୁରିକତା । ଏହି ଉଭୟ ବିରୋଧୀ (Two negations) ସଂସ୍କୃତିର ମହାମିଳନ ଓ ସମୁଦାର ସମନ୍ୱୟ ଘଟିଛି ଶ୍ରୀଅରବିନ୍ଦଙ୍କ ଯୋଗ-ଦର୍ଶନରେ ଓ ଶିକ୍ଷା-ବିଧିରେ । ଶ୍ରୀଅରବିନ୍ଦଙ୍କ ସର୍ବାଙ୍ଗୀନ ଶିକ୍ଷା-ବିଧିରେ ଉଭୟ ଜଗତ—ଅନ୍ତର୍ଜଗତ ଓ ବହିର୍ଜଗତ ମଧ୍ୟରେ ଗଭୀର ସାମଞ୍ଜସ୍ୟ ରକ୍ଷା ହୋଇପାରିଛି, କାରଣ ତାଙ୍କ ଅଧ୍ୟାତ୍ମ ଦର୍ଶନରେ ଜଡ଼ ଓ ଚେତନ ମଧ୍ୟରେ ଏକ ସେତୁ ସ୍ଥାପିତ ହୋଇଛି ।

ଶ୍ରୀଅରବିନ୍ଦଙ୍କ ମତରେ ଏ ଜଗତରେ କିଛି ମିଥ୍ୟା ବା ଅବାଞ୍ଛିତ ବୋଲି ନାହିଁ । ଜଗତକୁ ମାୟା ବା ସ୍ୱପ୍ନ ବୋଲି କହି ବର୍ଜ୍ଜନ କରିବାର ପ୍ରୟୋଜନ ନାହିଁ । ଅନ୍ୟ ଗୋଟିଏ ବ୍ୟାପକ ଓ ବୃହତ୍ତର ଅଧ୍ୟାତ୍ମ ଉପଲବ୍ଧି ଦ୍ୱାରା ଶ୍ରୀଅରବିନ୍ଦ ଜାଣିପାରିଲେ ଯେ ଏ ଜଗତରେ ପରମା ଦିବ୍ୟ ଅତିମାନସ ଶକ୍ତିର ଅବତରଣ ଫଳରେ ଏକ ରୂପାନ୍ତର ସମ୍ଭବ ହେବ । ପ୍ରକୃତିର ବିବର୍ତ୍ତନଧାରାରେ ଜଡ଼, ଉଦ୍ଭିଦ ଓ ପଶୁ ଜଗତର ପରେ ଯେପରି ମାନବର

ଉଦ୍ଭବ ହୋଇଅଛି, ସେହିପରି ମାନବ ପରେ ଅତିମାନବର ଆବିର୍ଭାବ ଏକ ଅନିବାର୍ଯ୍ୟ ଘଟଣା, କିନ୍ତୁ ଅତିମାନବହିଁ ଦିବ୍ୟ-ମାନବ, ରୂପାନ୍ତରିତ ଅଧ୍ୟାତ୍ମମୟ ଭଗବତ ପୁରୁଷ । ଏହିପରି ମାନବ-ଗୋଷ୍ଠୀ ସଂଗଠନରେ ପୃଥିବୀରେ ଗୋଟିଏ ନୂତନ ମାନବ-ଜାତି ସମ୍ଭବ ହେବ । ଏହାହିଁ ଶ୍ରୀଅରବିନ୍ଦଙ୍କ ନୂତନ ସମାଜ ସ୍ଥାପନର ଏକ ଦିକ୍-ଦର୍ଶନ ଏବଂ ଏହା ଯେ ଶ୍ରୀଅରବିନ୍ଦ ଅନ୍ତର୍ଜାତିକ ଶିକ୍ଷା-କେନ୍ଦ୍ରର ମୂଳ ଲକ୍ଷ୍ୟ ଏକଥା ପୂର୍ବରୁ କହିଛି । ମନୁଷ୍ୟର ଏହି ସତ୍ତାନ୍ତର ଅର୍ଥାତ୍ ଅଧ୍ୟାତ୍ମ ରୂପାନ୍ତର ହେବ ଶିକ୍ଷାର ମାଧ୍ୟମରେ । ସେଥିପାଇଁ ମନୁଷ୍ୟକୁ ତାର ଦେହ, ପ୍ରାଣ, ମନ ଓ ଅନ୍ୟାନ୍ୟ ସକଳ ଅଙ୍ଗରେ ଏପରି ଗୋଟିଏ ଶିକ୍ଷା-ପ୍ରଣାଳୀ ଅନୁସରଣ କରିବାକୁ ହେବ ଯଦ୍ଦ୍ୱାରା ତାହାର ଅନ୍ତର୍ନିହିତ ଦିବ୍ୟ-ଶକ୍ତିର ବିକାଶ ସମ୍ଭବ ହେବ । ଏହିଠାରେ ଶ୍ରୀଅରବିନ୍ଦ ଓ ଶ୍ରୀମା ଶିକ୍ଷାକୁ ଅତି ବ୍ୟାପକ ଅର୍ଥରେ ଗ୍ରହଣ କରିଅଛନ୍ତି ।

## ସର୍ବାଙ୍ଗୀନ ଶିକ୍ଷାର ଚତୁର୍ବିଧ ଅଙ୍ଗ :

ଶ୍ରୀଅରବିନ୍ଦଙ୍କ ଶିକ୍ଷା-ଦର୍ଶନର ଏକ ପ୍ରଧାନ ଦିଗ ହେଲା ମନୁଷ୍ୟ ବ୍ୟକ୍ତିତ୍ୱର ବିଶ୍ଳେଷଣ । ମନୁଷ୍ୟ ଏକକ ବ୍ୟକ୍ତିତ୍ୱ ନୁହେଁ, ତାହା ମଧ୍ୟରେ ରହିଛି ବହୁ ବ୍ୟକ୍ତିତ୍ୱ । ପ୍ରଧାନତଃ ତାହା ମଧ୍ୟରେ ରହିଛି ଦୈହିକ ବ୍ୟକ୍ତିତ୍ୱ (Physical personality), ପ୍ରାଣମୟ ବ୍ୟକ୍ତିତ୍ୱ (Vital personality), ମନୋମୟ ବ୍ୟକ୍ତିତ୍ୱ (Mental personality) ଏବଂ ଚୈତ୍ୟମୟ ବ୍ୟକ୍ତିତ୍ୱ (Psychic personality) । ସାଧାରଣତଃ ଦେଖାଯାଏ ମନୁଷ୍ୟର ଏହି ବିଭିନ୍ନ ବ୍ୟକ୍ତିତ୍ୱ ମଧ୍ୟରେ କୌଣସି ମେଳ ନ ଥାଏ, ସାମଞ୍ଜସ୍ୟ ନ ଥାଏ ।

ପରସ୍ପର ମଧ୍ୟରେ ସର୍ବଦା ଯୁଦ୍ଧ, ଦ୍ୱନ୍ଦ୍ୱ ଓ କଳହ ଲାଗିରହିଥାଏ। ଏ ସବୁର ମଧ୍ୟରେ ଯଥାର୍ଥ ସମନ୍ୱୟ ସ୍ଥାପନ କରି ବ୍ୟକ୍ତିତ୍ୱର ଯଥାଯଥ ବିକାଶ, ନିୟନ୍ତ୍ରଣ ଓ ପୂର୍ଣ୍ଣତା ପ୍ରଦାନ ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କ ଶିକ୍ଷା-ପଦ୍ଧତିର ପ୍ରଧାନ ଲକ୍ଷ୍ୟ।

ବ୍ୟକ୍ତିତ୍ୱର ପ୍ରତ୍ୟେକ ଅଙ୍ଗ ସକାଶେ ଗୋଟିଏ ଗୋଟିଏ ବିଧିବଦ୍ଧ ଶିକ୍ଷା-ପ୍ରଣାଳୀର ଅନୁସରଣ କରିବାକୁ ପଡ଼ିବ। ଶରୀରକ୍ଷେତ୍ରରେ ଯେପରି ଶାରୀରିକ ଶିକ୍ଷାର ଆବଶ୍ୟକତା ଅଛି, ସେହିପରି ପ୍ରାଣ ଓ ମନର କ୍ଷେତ୍ରରେ ପ୍ରାଣିକ ଓ ମାନସିକ ଶିକ୍ଷାର ଏକ ଯଥାର୍ଥ ଓ ସୁସ୍ପଷ୍ଟ ଶିକ୍ଷା-ପଦ୍ଧତି ଗ୍ରହଣ କରିବାକୁ ପଡ଼ିବ। ଏ ସବୁ ଛଡ଼ା ବ୍ୟକ୍ତିତ୍ୱର ଚରମ ଉନ୍ନୟନ ଓ ପୂର୍ଣ୍ଣ ବିକାଶ ନିମିତ୍ତ ଗୋଟିଏ ଚୈତ୍ୟ ଓ ଆଧ୍ୟାତ୍ମିକ ଶିକ୍ଷାର ମଧ୍ୟ ପ୍ରୟୋଜନ ରହିଛି। ଏହି ଶାରୀରିକ (physical), ପ୍ରାଣିକ (vital), ମାନସିକ (mental), ଚୈତ୍ୟ ଓ ଆଧ୍ୟାତ୍ମିକ (psychic and spiritual) ଶିକ୍ଷା ବିଷୟରେ ଶ୍ରୀମା ତାଙ୍କ ରଚିତ "ଶିକ୍ଷା" (On Education) ପୁସ୍ତକରେ ବିସ୍ତୃତ ଭାବରେ ଆଲୋଚନା କରିଅଛନ୍ତି। ସେହି ପୁସ୍ତକର ଅନୁସରଣରେ ବିଭିନ୍ନ ଶିକ୍ଷାବିଧିର ଏଠାରେ ଆଲୋଚନା କରିବା।

## (୧) ଶାରୀରିକ ଶିକ୍ଷା :

ଶ୍ରୀଅରବିନ୍ଦ ଅନ୍ତର୍ଜାତିକ ଶିକ୍ଷା-କେନ୍ଦ୍ରରେ ଶାରୀରିକ ଶିକ୍ଷାର ମୂଳଭିତ୍ତି ହେଲା ଶରୀରକୁ ଦିବ୍ୟ-ଜୀବନ ପ୍ରକାଶର ଏକ ଯଥାର୍ଥ ଯନ୍ତ୍ରବୋଲି ଗ୍ରହଣ କରି ତାହାର ରୂପାନ୍ତର ସାଧନ କରିବା। ଯେଉଁ ଶାରୀରିକ ଶିକ୍ଷାର ପ୍ରଣାଳୀ ଏଠାରେ ଅନୁସୃତ ହୁଏ ତାହା

କେତେମାସ ବା କେତେବର୍ଷର ଗୋଟିଏ ମାମୁଲି ଶିକ୍ଷା ନୁହେଁ, ବରଂ ସମଗ୍ର ଜୀବନବ୍ୟାପୀ ଏକ ଗମ୍ଭୀର ତପସ୍ୟା ।

ଶାରୀରିକ ଶିକ୍ଷାକୁ ଫଳପ୍ରଦ କରିବାକୁ ହେଲେ ବହୁତ ପରିଶ୍ରମ କରିବାକୁ ହୁଏ ଏବଂ ବହୁତ ଦୂରଦୃଷ୍ଟି ରଖି କାର୍ଯ୍ୟ କରିବାକୁ ହୁଏ । ଚେତନାର ଯେତେ ସ୍ତର ଅଛି ତା ଭିତରେ ଶାରୀରିକ ସ୍ତରହିଁ ପରିପୂର୍ଣ୍ଣ ଭାବରେ ବିଧିବଦ୍ଧ ଉପାୟ, ନିୟମ, ଶୃଙ୍ଖଳା ଓ ପ୍ରଣାଳୀଦ୍ୱାରା ନିୟନ୍ତ୍ରିତ ହୁଏ । ଶରୀର ଅଭ୍ୟାସବଳରେ ଗଠିତ ଗୋଟିଏ ଯନ୍ତ୍ର, ତାକୁ ଯଥାସମ୍ଭବ ନମନୀୟ ରଖି ସୁପରିଚାଳିତ ଓ ସୁନିୟନ୍ତ୍ରିତ କରିବାକୁ ହେବ ।

ଏହି ଶିକ୍ଷାର ପ୍ରଧାନତଃ ତିନୋଟି ଦିଗ ଅଛି :

୧. ଶରୀରର ପ୍ରତ୍ୟେକ ଯନ୍ତ୍ର ଉପରେ କର୍ତ୍ତୃତ୍ୱ ସ୍ଥାପନ ଏବଂ ତାହାର ସୁନିୟନ୍ତ୍ରଣ ।

୨. ଶରୀରର ପ୍ରତ୍ୟେକ ଅଂଶ ଏବଂ ସେ ସବୁର ଗତିବିଧିର ଗୋଟିଏ ପରିପୂର୍ଣ୍ଣ ନିୟମାନୁଗତ, ସାମଞ୍ଜସ୍ୟପୂର୍ଣ୍ଣ ପୁଷ୍ଟି-ସାଧନ ।

୩. ଶରୀରର ଯଦି କୌଣସି ତ୍ରୁଟି, ଖୁଣ ବା ବିକୃତି ଥାଏ, ତାହାର ସଂଶୋଧନ ।

ଶାରୀରିକ ଶିକ୍ଷା ଜନ୍ମଠାରୁ ଆରମ୍ଭ ହୋଇ ସମଗ୍ର ଜୀବନ ଧରି ଚାଲିବା ଉଚିତ । ଜନ୍ମର ପ୍ରଥମ କେତେ ଦିନରୁ ଦେଖିବାକୁ ହେବ ଶିଶୁର ଆହାର, ନିଦ୍ରା, ମଳମୂତ୍ର ତ୍ୟାଗ ଇତ୍ୟାଦି ଯେପରି ଯଥାଯଥ ଭାବରେ ହୁଏ । ଏହି ତିନୋଟି ବିଷୟ ପ୍ରତି ଦୃଷ୍ଟି ଦେଲେ ପରେ ଅନେକ ଦୁଃଖ ଭୋଗରୁ ରକ୍ଷା ମିଳେ । ଆରମ୍ଭରୁ ଯଦି ଶିଶୁ

ଭଲ ଅଭ୍ୟାସଗୁଡ଼ିକୁ ଆୟତ୍ତ କରନ୍ତି, ତେବେ ତାର ସମଗ୍ର ଜୀବନ ସୁଖମୟ ହୁଏ । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଶାରୀରିକ ଶିକ୍ଷା ଯେପରି ଜ୍ଞାନାଲୋକିତ, ଯୁକ୍ତିଯୁକ୍ତ ଓ ଯଥାର୍ଥ ହୁଏ ତାହା ପ୍ରତି ଦୃଷ୍ଟି ଦେବାକୁ ହେବ । ବସିବା, ଛିଡ଼ାହେବା, ଅଙ୍ଗଭଙ୍ଗୀ କରିବା, ଚାଲିବା, ବୁଲିବାର ନାନା ବିକୃତ ଅଭ୍ୟାସ ଶିଶୁ ଅବସ୍ଥାରୁ ଆସି-ଯାଏ । ପରେ ସମଗ୍ର ଜୀବନ ଉପରେ ଏହାର ପ୍ରଭାବ ପଡ଼େ । ସୁତରାଂ ବାଲ୍ୟ କାଳରୁ ଶରୀରର ଗତିବୃତ୍ତି ଉପରେ ତୀକ୍ଷ୍ଣ ଦୃଷ୍ଟି ଦେଇ ତାହାର ସୌନ୍ଦର୍ଯ୍ୟ ଯେପରି ବିକଶିତ ହୁଏ ତାହା ଦେଖି-ବାକୁ ହେବ । ଏହାଛଡ଼ା ଶାରୀରିକ ବ୍ୟାୟାମ ଓ ବିଭିନ୍ନ ଧରଣର ଶାରୀରିକ ଚର୍ଚ୍ଚା ଶରୀରର ବଳ, ସାମର୍ଥ୍ୟ ଓ ଶକ୍ତିବୃଦ୍ଧି ନିମିତ୍ତ ଉପଯୁକ୍ତ ଶିକ୍ଷକଙ୍କ ପରିଚାଳନାରେ ଗ୍ରହଣ କରିବା ଏକାନ୍ତ ଆବ-ଶ୍ୟକ । ଆଜିକାଲି ସାଧାରଣ ଶିକ୍ଷାରେ ମଧ୍ୟ ଶରୀର-ଚର୍ଚ୍ଚା ଉପରେ ଖୁବ୍ ଜୋର୍ ଦିଆଯାଉଛି, ସୁତରାଂ ଛାତ୍ର-ଛାତ୍ରୀମାନେ ନିଜର ସ୍ୱାସ୍ଥ୍ୟ-ରକ୍ଷା ଦିଗରେ ଯତ୍ନଶୀଳ ହେଲେ ଏସମ୍ବନ୍ଧରେ ବହୁ ସାହାଯ୍ୟ ବହୁ କ୍ଷେତ୍ରରୁ ପାଇପାରିବେ ।

ଏତଦ୍ ବ୍ୟତୀତ ଶାରୀରିକ ଶିକ୍ଷାର ଅନ୍ୟ ତିନୋଟି ଅତ୍ୟା-ବଶ୍ୟକୀୟ ଓ ଅପରିହାର୍ଯ୍ୟ ଅଙ୍ଗ ହେଲା ଖାଦ୍ୟ, ନିଦ୍ରା ଓ ବିଶ୍ରାମ । ପ୍ରତ୍ୟେକର ଖାଦ୍ୟ ବିଶେଷତଃ ଶିଶୁର ଖାଦ୍ୟ ସରଳ, ସୁସ୍ୱାଦୁ, ପୁଷ୍ଟି-କର ଓ ମନୋରମ ହେବା ଉଚିତ । କିନ୍ତୁ ଶିଶୁ ଯେଉଁ ଖାଦ୍ୟ ଖାଇବାକୁ ଚାହେଁ ନାହିଁ, ତାହା ଜୋର୍ କରି ତାକୁ ଖୁଆଇବା ଭଲ ନୁହେଁ । ଦେହର ସର୍ବଦା ଗୋଟାଏ ସହଜ ସୂକ୍ଷ୍ମବୋଧ ଥାଏ ଯାହା ଫଳରେ ଶିଶୁ ବୁଝିପାରେ କ'ଣ ଖାଇଲେ ଭଲ ହେବ । ଶରୀରର ଏହି ସୂକ୍ଷ୍ମବୋଧକୁ କେବେ ବି ନଷ୍ଟ ହେବାକୁ ଦେବା ଉଚିତ ନୁହେଁ ।

ପୁନଶ୍ଚ ଯେଉଁ ଖାଦ୍ୟ ଶରୀରକୁ ଅତିରିକ୍ତ ବୋଝ ହୁଏ ଅଥବା କ୍ଷତି କରେ ତାହା ସର୍ବଦା ବର୍ଜ୍ଜନ କରିବା ଉଚିତ । ଆହାର ସର୍ବଦା କ୍ଷୁଧାନୁଯାୟୀ ଗ୍ରହଣ କରିବାକୁ ହେବ, ନିଜର କାମନା ଓ ଲାଳସାର ତୃପ୍ତି ପାଇଁ ନୁହେଁ । ପୁନଶ୍ଚ ଭଲ ଖାଦ୍ୟର ଲୋଭ କେବେ ବି ଶିଶୁ ମନରେ ଜାଗ୍ରତ କରାଇବାକୁ ଦେବ ନାହିଁ । "ତୁ ଯଦି ଭଲ ପିଲା-ପରି ବ୍ୟବହାର ନ କରୁ ତେବେ ତୋତେ ମିଠାଇ ଦିଆଯିବ ନାହିଁ"—ଏପରି ଭୟ ଓ ଲୋଭ ଦେଖାଇ କେବେ ବି ଶିଶୁକୁ କହିବା ଉଚିତ ନୁହେଁ । ଖାଦ୍ୟର ଯଥାର୍ଥ ବ୍ୟବସ୍ଥା ସଙ୍ଗେ ନିଦ୍ରା ଓ ବିଶ୍ରାମ ପ୍ରତି ଧ୍ୟାନ ଦେବାକୁ ହେବ । ଶରୀରକୁ ଆବଶ୍ୟକୀୟ ନିଦ୍ରା ଓ ବିଶ୍ରାମ ସର୍ବଦାହିଁ ଦେବାକୁ ହେବ । ଏ କ୍ଷେତ୍ରରେ ମଧ୍ୟ ଶରୀରକୁ ସ୍ୱାଭାବିକ ଭାବରେ କାର୍ଯ୍ୟ କରିବାକୁ ଦେବା ଉଚିତ । ଅତ୍ୟଧିକ କାର୍ଯ୍ୟ କରିବା ଫଳରେ ଶାରୀରିକ ବିଶ୍ରାମ ଅଭାବରେ ତାହା ଯେପରି ଦୁର୍ବଳ ହୁଏ, ସେହିପରି ତାମସିକତା ଓ ଆଳସ୍ୟ ଫଳରେ ତାହା ପଶୁଧର୍ମୀ ହୋଇଯାଏ । ଏହିସବୁ ସଙ୍ଗେ ସଙ୍ଗେ ପରିଷ୍କାର ପରିଚ୍ଛନ୍ନତା ଓ ଅନ୍ୟାନ୍ୟ ସ୍ୱାସ୍ଥ୍ୟକର ଅଭ୍ୟାସ ଓ ସୁନ୍ଦର ସୁଗଠିତ ସ୍ୱାସ୍ଥ୍ୟବାନ୍ ମନୁଷ୍ୟ ପ୍ରତି ଶିଶୁର ସର୍ବଦା ଦୃଷ୍ଟି ଆକର୍ଷଣ କରିବାକୁ ହେବ ।

ଆଉ ଗୋଟିଏ ପ୍ରଚଳିତ ବିଶ୍ୱାସ ଅଛି ଯେ ଯାହାର ବୁଦ୍ଧି ଯେତେ ବେଶୀ ତୀକ୍ଷ୍ଣ, ତାହାର ଶରୀର ତେତେ ବେଶୀ ଦୁର୍ବଳ । କିନ୍ତୁ ଏହି ଧାରଣା ଏକେବାରେ ଭ୍ରାନ୍ତ ଏବଂ ଏହାର ମୂଳରେ କୌଣସି ସତ୍ୟତା ନାହିଁ । ଏପରି ଧାରଣାକୁ ମନରୁ ସର୍ବଦା ଦୂର କରିବା ଉଚିତ । ଆଉ ଗୋଟିଏ ଗଭୀର ବିଷୟ ପ୍ରତି ଶ୍ରୀମା ସମ-ସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି । ଶିଶୁମାନଙ୍କର ସାଧାରଣ ଶିକ୍ଷା-

ନିର୍ଦ୍ଦିଷ୍ଟରେ ବ୍ୟାୟାମ ଓ ଖୋଲା ପବନରେ ଖେଳାଖେଳିର ସ୍ଥାନ ରଖିବା ନିତାନ୍ତ ଆବଶ୍ୟକ । ସ୍ୱାସ୍ଥ୍ୟରକ୍ଷା ସକାଶେ ଏହା ପୃଥିବୀର ସମସ୍ତ ଔଷଧ ଅପେକ୍ଷା ବିଶେଷ ଉପକାରୀ । ଦୁର୍ବଳତା ବା ରକ୍ତର ଅଳ୍ପତା ଦୂର କରିବା ସକାଶେ ଏକ ଘଣ୍ଟା ଖରାରେ ବୁଲିବା ଗୋଟିଏ ଘରଭର୍ତ୍ତି ବଳକାରକ ଔଷଧଠାରୁ ବେଶୀ ଉପକାରୀ । ଏକଥା ବରାବର ମନେ ରଖିବା ଉଚିତ ଯେ "ଏକେବାରେ ଅସମ୍ଭବ ନ ହୋଇ ପଡ଼ିଲେ" ଔଷଧ ବ୍ୟବହାର କରିବା ଉଚିତ ନୁହେଁ ।

ଏହି ଶରୀର-ଚର୍ଚ୍ଚା ସକାଶେ କାର୍ଯ୍ୟତଃ ଶ୍ରୀଅରବିନ୍ଦ ଅନ୍ତର୍ଜାତିକ ଶିକ୍ଷା-କେନ୍ଦ୍ରରେ କି କି ଉପାୟ ଅବଲମ୍ବନ କରାଯାଇଛି ତାହା ଏହି ପ୍ରବନ୍ଧର ଦ୍ୱିତୀୟ ଭାଗରେ ଆଲୋଚିତ ହୋଇଛି ।

## (୨) ପ୍ରାଣିକ ଶିକ୍ଷା :

ପ୍ରାଣର କ୍ଷେତ୍ର ହେଲା ଶକ୍ତି, ସାମର୍ଥ୍ୟ, ତେଜ, ବଳ, ଉତ୍ସାହ, କାମନା-ବାସନା, ପ୍ରବୃତ୍ତି ଓ ପ୍ରେରଣାର କ୍ଷେତ୍ର । ପ୍ରାଣ ସ୍ୱଭାବତଃ ସ୍ୱେଚ୍ଛାଚାରୀ, ଅହଂକାରୀ, କ୍ଷମତାପ୍ରିୟ ଓ ଦୁର୍ଦ୍ଦାନ୍ତ । ଏହାକୁ ଶାସନ କରି ଯଥାଯଥ ଭାବରେ ଚାଳନା କରିବା ଖୁବ୍ କଠିନ । ସବୁ ପ୍ରକାର ଶିକ୍ଷା ମଧ୍ୟରେ ପ୍ରାଣର ଶିକ୍ଷାହିଁ ଚରିତ୍ର ଗଠନ ଦିଗରୁ ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ । ପ୍ରାଣର ଯଥାଯଥ ସୁନିୟନ୍ତ୍ରଣ, ପରିଚାଳନା ଉପରେ ଜୀବନର ଶୃଙ୍ଖଳା ନିର୍ଭର କରେ । ବହୁ ଶିକ୍ଷିତ ବୁଦ୍ଧିଜୀବୀଙ୍କର ପ୍ରାଣ-ଶକ୍ତିର ଏହି ବ୍ୟଭିଚାରପୂର୍ଣ୍ଣ କ୍ରିୟା ଦେଖିବାକୁ ମିଳେ । ପ୍ରାଣ-ଶକ୍ତିସମୂହ ଉପରେ ଯଦି କର୍ତ୍ତୃତ୍ୱ ନ ରହେ, ତେବେ ଜୀବନ ବାୟୁରେ ଚାଳିତ କନ୍ଦୁକ ତୁଲ୍ୟ ହୋଇପଡ଼େ । ବର୍ତ୍ତମାନ ଜଗତର

ଦୁଇଟି ପ୍ରଚଳିତ ଧାରଣା ପ୍ରାଣର ଆଧିପତ୍ୟକୁ ଦୁର୍ଦ୍ଦମନୀୟ ହେବାକୁ ବିଶେଷ ସାହାଯ୍ୟ କରିଛି । ପ୍ରଥମତଃ ଜୀବନର ଲକ୍ଷ୍ୟ ହେଲା ସୁଖୀ ହେବା; ଦ୍ୱିତୀୟତଃ ମନୁଷ୍ୟ-ସ୍ୱଭାବର ପରିବର୍ତ୍ତନ ଏକେବାରେ ଅସମ୍ଭବ । ପ୍ରଥମ ଲକ୍ଷ୍ୟକୁ ଅନୁସରଣ କରି ମନୁଷ୍ୟ ଯେକୌଣସି ଉପାୟରେ ସୁଖୀ ହେବାକୁ ଚେଷ୍ଟା କରେ । ଏହାର ପରିଣାମରେ ଆସେ ବହୁ ସଂଘର୍ଷ, ନିରାଶା, ହତାଶା ଓ ତା ପରେ ଗୋଟାଏ ଚୂଡ଼ାନ୍ତ ବିପର୍ଯ୍ୟୟ ।

ପ୍ରାଣ-ଶିକ୍ଷାର ପ୍ରଧାନତଃ ଦୁଇଟି ଦିଗ ଅଛି : ପ୍ରଥମତଃ ଇନ୍ଦ୍ରିୟସମୂହର ଯଥାଯଥ ଅନୁଶୀଳନ, ନିୟନ୍ତ୍ରଣ, ସଂଗଠନ ଓ ପ୍ରୟୋଗ; ଦ୍ୱିତୀୟତଃ ଆତ୍ମ-ଚେତନାର ଉନ୍ମେଷ ଓ ବିଶ୍ଳେଷଣ ଦ୍ୱାରା ଚରିତ୍ର ଓ ବ୍ୟବହାର ଉପରେ କର୍ତ୍ତୃତ୍ୱ ସ୍ଥାପନ ଓ ପରି-ଶେଷରେ ଭାଗବତ ଜ୍ୟୋତି ବଳରେ ତାହାର ରୂପାନ୍ତର ସାଧନ । ଇନ୍ଦ୍ରିୟର ଯଥାଯଥ ପରିଚାଳନା ଫଳରେ ଯଦି ଯଥାର୍ଥ ସୌନ୍ଦର୍ଯ୍ୟ ଓ ରୁଚି ପ୍ରତି ଦୃଷ୍ଟି ଖୋଲି ଯାଇପାରେ, ତେବେ ବହୁତ ବର୍ବର ପାଶବିକ ଓ କଦର୍ଯ୍ୟ ବୃତ୍ତି ହାତରୁ ମନୁଷ୍ୟ ରକ୍ଷା ପାଇପାରେ । ଦ୍ୱିତୀୟତଃ ବ୍ୟକ୍ତି ମଧ୍ୟସ୍ଥ ସୁପ୍ତ ଆତ୍ମ-ଚେତନାର ଜାଗରଣଦ୍ୱାରା ପ୍ରାଣର ବିକେନ୍ଦ୍ରିତ ଶକ୍ତି ଉପରେ କର୍ତ୍ତୃତ୍ୱ ଆସେ ଏବଂ ଏହାଦ୍ୱାରା ଅସଂଯତ ଜୀବନକୁ ସଂଯତ କରାଯାଏ ।

ସାଧାରଣତଃ ପ୍ରାଣର ଶିକ୍ଷା, ତାହାର ଶୁଦ୍ଧି ଓ ତାହା ଉପରେ କର୍ତ୍ତୃତ୍ୱ ସ୍ଥାପନ ନିମିତ୍ତ ନିଗ୍ରହ, ଦମନ, କୃଚ୍ଛ୍ରତା ଏବଂ ତପସ୍ୟା ଇତ୍ୟାଦି ଉପାୟ ଅବଲମ୍ବନ କରାଯାଏ । ଏ ପଥ ଅବଶ୍ୟ ବେଶୀ ସହଜ ଏବଂ ଆଶୁ ଫଳପ୍ରଦ କିନ୍ତୁ ଏହାର ପ୍ରଭାବ ଅଳ୍ପକ୍ଷଣ

ସ୍ଥାୟୀ । ଏହାଦ୍ୱାରା ପ୍ରାଣର ସହଯୋଗ ବୃତ୍ତିକୁ ମାରି ଦିଆହୁଏ । କିନ୍ତୁ ପ୍ରାଣର ଯେଉଁଟି ଶକ୍ତିର ଭୂମି, ସେହି ଶକ୍ତିକୁ ନଷ୍ଟ ନ କରି ଯଥାର୍ଥ ଭାବରେ ବ୍ୟବହାର କରିବାକୁ ହେବ । ପ୍ରାଣ ଉପରେ କର୍ତ୍ତୃତ୍ୱ ଆଣିବାର ବହୁ ଉପାୟ ଅଛି । କାହାର ସକାଶେ ଯୁକ୍ତି-ସିଦ୍ଧ ତର୍କ, ଅନ୍ୟ ସକାଶେ ହୃଦୟାନୁଭବ ଓ ସଦିଚ୍ଛା, ଅନ୍ୟ କାହାରି ସକାଶେ ଆତ୍ମ-ମର୍ଯ୍ୟାଦା ଓ ଆତ୍ମ-ସମ୍ମାନ ଆତ୍ମୋନ୍ନତିରେ ଦୁର୍ଦ୍ଦାନ୍ତ ପ୍ରାଣକୁ ଆୟତ୍ତ କରିବାରେ ସହାୟତା କରେ । କିନ୍ତୁ ସବୁଠାରୁ କାର୍ଯ୍ୟକାରୀ ଉପାୟ ହେଲା ନିରନ୍ତର ସତ୍ଭାବାତ୍ମକ ଦୃଷ୍ଟାନ୍ତ । ଆଉ ଯଥାର୍ଥ ଦୃଷ୍ଟାନ୍ତ ଦ୍ୱାରା ମନୁଷ୍ୟର ଯେପରି ପରି-ବର୍ତ୍ତନ ହୁଏ ଅନ୍ୟ କାହାରି ଦ୍ୱାରା ନୁହେଁ ।

ମୋଟରେ କହିବାକୁ ଗଲେ ପ୍ରାଣ-ଶିକ୍ଷାର ତିନୋଟି ସ୍ତର ଅଛି । ପ୍ରଥମତଃ ପ୍ରାଣର ବିଭିନ୍ନ ଗତିବୃତ୍ତି ସମ୍ବନ୍ଧରେ ସଚେତନ ହେବା, ଦ୍ୱିତୀୟତଃ ସେ ସବୁର ଉପରେ କର୍ତ୍ତୃତ୍ୱ ସ୍ଥାପନ କରିବା, ତୃତୀୟତଃ ଚରିତ୍ରର ପୂର୍ଣ୍ଣ ରୂପାନ୍ତର ସାଧନ ।

ଶ୍ରୀଅରବିନ୍ଦ ଶିକ୍ଷା-କେନ୍ଦ୍ରରେ ଏହି ପ୍ରାଣର ଶିକ୍ଷା କିପରି ସାଧିତ ହେଉଛି ତାହାର ସବିଶେଷ ବର୍ଣ୍ଣନା ପରେ କରାଯିବ । ବର୍ତ୍ତମାନ ଏତିକି କହିଲେ ଯଥେଷ୍ଟ ହେବ ଯେ ଏଠାରେ ଶୃଙ୍ଖଳା-ଜ୍ଞାନ, ସୌନ୍ଦର୍ଯ୍ୟ-ବୋଧ, ସୂକ୍ଷ୍ମ ରୁଚି-ବୋଧ, ନିମ୍ନତର ବାସନା ଓ ପ୍ରବୃତ୍ତିର ସ୍ୱତଃ ଅପସାରଣ, ରାଗ, ଦ୍ୱେଷ, ଅହଂକାର ଓ କଦର୍ଯ୍ୟ କୁରୁଚିପୂର୍ଣ୍ଣ ଘଟଣାର ଏକାନ୍ତ ଅଭାବ ଶିଶୁ-ଜୀବନକୁ ଅତି ମହତ୍ତ୍ୱ ପଥରେ ଗଠିତ କରେ । ପ୍ରଶାନ୍ତ, ଶୁଦ୍ଧ, ପବିତ୍ର ଅଧ୍ୟାତ୍ମ ଭାବପୂର୍ଣ୍ଣ ବାୟୁମଣ୍ଡଳରେ ପ୍ରାଣର ଅପୂର୍ବ ରୂପାନ୍ତରକାରୀ ଶକ୍ତି

କ୍ରିୟାଶୀଳ ହୁଏ । ଏହାଛଡ଼ା ବହୁ ତପସ୍ୱୀ ସାଧକ ଓ ପବିତ୍ରମନା ବ୍ୟକ୍ତିଙ୍କ ଉଦାହରଣ ଓ ସଂସ୍ପର୍ଶ ସାଧାରଣ ଜୀବନରେ କି ପ୍ରଭାବ ପକାଏ ତାହା କହିବା ଅନାବଶ୍ୟକ । ସର୍ବୋପରି ନାନା ଦୁଃସମୟ ଓ ସଙ୍କଟରେ ରହିଛି ଶ୍ରୀମା'ଙ୍କ ହସ୍ତର ଅଯାଚିତ କରୁଣାର ସ୍ପର୍ଶ । ଏହାଦ୍ୱାରା ପ୍ରାଣର ଯଥେଷ୍ଟ ପରିବର୍ତ୍ତନ ଘଟେ ।

## (୩) ମାନସିକ ଶିକ୍ଷା :

ଶିକ୍ଷା କହିଲେ ଆମ୍ଭେମାନେ ମୋଟାମୋଟି ମାନସିକ ଶିକ୍ଷାକୁ ବୁଝିଥାଉ । ଆଜିକାଲି ଶିକ୍ଷା-କ୍ଷେତ୍ରରେ ମାନସିକ ଶିକ୍ଷାହିଁ ସବୁଠାରୁ ବେଶୀ ପ୍ରଚଳିତ ଓ ପରିଚିତ । ମାନସିକ ଶିକ୍ଷାର ପ୍ରଧାନ ଲକ୍ଷ୍ୟହିଁ ମନର ଶ୍ରୀବୃଦ୍ଧି ସାଧନ । ଏହି ଶିକ୍ଷାର ପ୍ରଧାନତଃ ପାଞ୍ଚୋଟି ଦିଗ ଅଛି :

୧ . ଏକାଗ୍ରତାର ଶକ୍ତି ଓ ମନ-ସଂଯୋଗର ସାମର୍ଥ୍ୟ ବୃଦ୍ଧି ।

୨ . ପ୍ରସାର, ବ୍ୟାପ୍ତି, ବୈଚିତ୍ର୍ୟ, ଐଶ୍ୱର୍ଯ୍ୟଦାୟକ ବୃତ୍ତିଚୟର ଅନୁଶୀଳନ ।

୩ . ଗୋଟିଏ ମୂଳ ଭାବ ବା ଉଚ୍ଚତର ଆଦର୍ଶ କିମ୍ବା ଗୋଟିଏ ଜ୍ୟୋତିର୍ମୟ ଲକ୍ଷ୍ୟକୁ କେନ୍ଦ୍ର କରି ସମସ୍ତ ଚିନ୍ତାର ଗଠନ ।

୪ . ଚିନ୍ତାର ନିୟନ୍ତ୍ରଣ ଓ ଅବାଞ୍ଛନୀୟ ଚିନ୍ତାର ବର୍ଜନ ।

୫ . ମାନସିକ ନିସ୍ତବ୍ଧତା, ପୂର୍ଣ୍ଣ ଶାନ୍ତି, ସତ୍ତାର ଉର୍ଦ୍ଧ୍ୱ ଲୋକସମୂହରୁ ଆଗତ ପ୍ରେରଣା ଧାରଣ କରିବାରେ କ୍ରମ-ବର୍ଦ୍ଧମାନ ସାମର୍ଥ୍ୟ ।

ପ୍ରତ୍ୟେକ ବ୍ୟକ୍ତି ପକ୍ଷରେ ଶିକ୍ଷାର ଏହି ପଞ୍ଚଧାରା କପରି ଅନୁସରଣ କରି ଚଳିବାକୁ ହେବ ତାହାର ବିଶଦ ବିବରଣୀ ଦେବା ସମ୍ଭବ ନୁହେଁ । ତେବେ କେତେକ ବିଷୟ ଏଠାରେ ଉଲ୍ଲେଖ କରିବା ।

ଶିଶୁର ମାନସିକ ଉନ୍ନତିରେ ସବୁଠାରୁ ବଡ଼ ବାଧା ହେଲା ଚିନ୍ତାର ବିକ୍ଷିପ୍ତତା । ତାହାର ଚିନ୍ତା ପ୍ରଜାପତି ପରି ଉଡ଼ିବୁଲେ । ତାହାକୁ ଏକାଗ୍ର କରିବାକୁ ହେଲେ ବିପୁଳ ପ୍ରୟାସର ପ୍ରୟୋଜନ । ଶିଶୁର ଶିକ୍ଷା ବିଷୟ ପ୍ରତି ଯଦି ଅନୁରାଗ ଜନ୍ମାଇ ଦିଆଯାଇ ପାରେ, ତେବେ ଏକାଗ୍ରତା ଲାଭ କରିବା ସହଜ ହୁଏ । ଏହି ସଙ୍ଗେ ସଙ୍ଗେ ଆବଶ୍ୟକ ସମ୍ୟକ୍ ପର୍ଯ୍ୟବେକ୍ଷଣ, ଯଥାର୍ଥ ଅନୁଶୀଳନ ଓ ଅଭ୍ରାନ୍ତ ସ୍ମରଣଶକ୍ତି । ସ୍ମରଣଶକ୍ତି ଅପେକ୍ଷା ବୋଧଶକ୍ତି ଉପରେ ବେଶୀ ଜୋର୍ ଦେବାକୁ ହେବ । ଏହାଛଡ଼ା ଶିଶୁର ଜିଜ୍ଞାସାଭାବ ଯେପରି ବଢ଼ିଉଠେ ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେବାକୁ ହେବ । ଏହାଛଡ଼ା କୌଣସି ବସ୍ତୁ ସମ୍ବନ୍ଧରେ ଶିଶୁର 'କପରି' ଓ 'କାହିଁକି' ପ୍ରଶ୍ନର ଉତ୍ତର ଦେବାକୁ କେବେ ଅସ୍ୱୀକାର କରିବା ଉଚିତ୍ ନୁହେଁ । ଏହି ଉପାୟରେ ଶିଶୁ-ମନରେ ଯଥାର୍ଥ ସ୍ପୃହା ଓ ଜ୍ଞାନ ଅର୍ଜନର ଅକ୍ଳାନ୍ତ ପ୍ରୟାସ ଜାଗ୍ରତ କରାଯାଇ ପାରିବ । ଦ୍ୱିତୀୟତଃ ଗୋଟିଏ ମାନସିକ ସମସ୍ୟାର କପରି ବହୁ ବିଭିନ୍ନ ଦିଗରୁ ଆଲୋଚନା କରାଯାଇପାରେ ତାହା ମଧ୍ୟ ଶିଶୁକୁ ଅତି ଯତ୍ନର ସହ ଶିକ୍ଷା ଦେବାକୁ ହେବ । ପକ୍ଷପାତିତ୍ୱ ଓ ଏକଦେଶ-ଦର୍ଶିତାରୁ ମନ ଯେପରି ମୁକ୍ତ ରହେ ତାହା ବରାବର ଦେଖିବାକୁ ହେବ । ଆଉମଧ୍ୟ ଏହି ଉପାୟରେ ଶିଶୁ ବୁଝିପାରିବ ଯେ ମାନସିକ ଜ୍ଞାନ ସର୍ବଦାହିଁ ଆପେକ୍ଷିକ । ତୃତୀୟତଃ ମାନସିକ ଶିକ୍ଷାରେ ଗୋଟିଏ କେନ୍ଦ୍ରୀୟ ଲକ୍ଷ୍ୟ, ସଙ୍ଗତ

ବା ସମନ୍ୱୟ ଆଣିବା ନିତାନ୍ତ ଆବଶ୍ୟକ । ନଚେତ୍ ଚିନ୍ତାଧାରା ଅତ୍ୟନ୍ତ ବିଶୃଙ୍ଖଳ ହୋଇଯାଏ । ଏହାଦ୍ୱାରା ଜୀବନର ଏକ ଅଟଳ ଭିତ୍ତି ଓ ଆଦର୍ଶର ସୂତ୍ର ଆବିଷ୍କାର କରାଯାଏ । ଏହି କେନ୍ଦ୍ରୀୟ ଲକ୍ଷ୍ୟ ଯେତେ ବ୍ୟାପକ ଓ ଉଚ୍ଚତର ହେବ, ଯେତେ ଅଧିକ ବିଶ୍ୱ-ଜନୀନ, ଯେତେ ଦେଶ ଓ କାଳ ଅତିକ୍ରମ କରିପାରିବ, ତେତେହିଁ ବହୁ ସଂଖ୍ୟକ ଜଟିଳ ଭାବନା, ଧାରଣା ଆଉ ବିଚାର ସକଳକୁ ସୁବ୍ୟବସ୍ଥିତ ଏବଂ ସୁସମଞ୍ଜସ କରିବାକୁ ସମର୍ଥ ହେବ । ମନେ ରଖିବା ଉଚିତ ଯେ ଏହି ଗଠନ କାର୍ଯ୍ୟ ଅନେକ ଦିନ ଧରି ଚାଲେ । ଚତୁର୍ଥତଃ ମନର ଗଠନାତ୍ମକ କ୍ରିୟା ଉପରେ ବିଶେଷ ଜୋର୍ ଦେବାକୁ ହେବ । ମାନସିକ କ୍ରିୟାର ଏ ଦିଗଟି ବିଶେଷ ମହତ୍ତ୍ୱ-ପୂର୍ଣ୍ଣ ହେଲେ ସୁଦ୍ଧା କଦାଚିତ୍ ଏ ବିଷୟରେ ଗମ୍ଭୀର ଧ୍ୟାନ ଦିଆହୁଏ । ମନରୁ ଅବାଞ୍ଛିତମାୟ ଚିନ୍ତା ଦୂର କରି ତାକୁ ଯଥାର୍ଥରେ ସୃଜନକ୍ଷମ ଓ ଶକ୍ତିଶାଳୀ କରିବା ବଡ଼ ଦୁରୂହ ବ୍ୟାପାର । ଏଥିପାଇଁ ପ୍ରତ୍ୟହ କିଛି ସମୟ ଧ୍ୟାନସ୍ଥ ହେବା ଭଲ । ଏହାଦ୍ୱାରା ବିଭିନ୍ନ ଚିନ୍ତାରାଶିକୁ ନିରୀକ୍ଷଣ କରାଯାଏ ଓ ତାହା ଉପରେ କର୍ତ୍ତୃତ୍ୱ ଅଣାଯାଏ । ଏହି ଏକାଗ୍ରତା ଓ ଧ୍ୟାନ ଯଦି ଆହୁରି ଗମ୍ଭୀର ହୁଏ ଯେଉଁଥିରେ କୌଣସି ଚିନ୍ତା ରହେ ନାହିଁ, ତାହାହେଲେ ବ୍ୟକ୍ତି ନିଜକୁ ଧୀରେ ଧୀରେ ଊର୍ଦ୍ଧ୍ୱସ୍ଥ ଦିବ୍ୟଭୂମି ଆଡ଼କୁ ଖୋଲି ଦେଇପାରେ ଏବଂ ସେଠାରୁ ଅବ୍ୟୟ ଅଖଣ୍ଡ ସତ୍ୟର ପ୍ରେରଣା ପାଇପାରେ ।

ଆଜିକାଲି ସାଧାରଣ ଶିକ୍ଷା-କ୍ଷେତ୍ରରେ ମନର ଚାଳନା ବହୁତ ବେଶୀ । ମନକୁ ଅଧିକ କ୍ରିୟାଶୀଳ କରିବାକୁ ସମସ୍ତେ ଜାଣନ୍ତି, ମାତ୍ର ବିଶ୍ରାମ ଦେବାକୁ ଖୁବ୍ କମ୍ ଲୋକ ଜାଣନ୍ତି । ଦିନବେଳେ

ମନର କ୍ରିୟା ଉପରେ କିଛି ସଂଯମ ଥାଏ କିନ୍ତୁ ରାତିରେ ଶରୀର ଅବସ୍ଥିତ ହୋଇପଡ଼ିଲେ ତାହା ଅତ୍ୟନ୍ତ ବିକ୍ଷିପ୍ତ ହୋଇପଡ଼େ । ଏଥିପାଇଁ ମନକୁ ବିଶ୍ରାମ ଦେବାର କଳା ଶିକ୍ଷା କରିବାକୁ ହେବ ।

"The art of giving rest to one's mind is a thing to be acquired. Changing mental activity is a way of rest; but the greatest possible rest lies in silence. And in in the case of mental faculties, a few minutes passed in the calm of silence mean a more effective rest than hours of sleep." (The Mother, *On Education*, pp. 46 )

ଅର୍ଥାତ୍ "ମନକୁ ବିଶ୍ରାମ ଦେବାର କଳା ଶିକ୍ଷା କରିବାକୁ ହେବ ଏବଂ ଏହାର ଗୋଟିଏ ଉପାୟ ହେଲା ମନର କାର୍ଯ୍ୟକୁ ବଦଳାଇବା କିନ୍ତୁ ସବୁଠାରୁ ଭଲ ବିଶ୍ରାମ ହେଲା ନୀରବତା । ମନର ବୃତ୍ତିସମୂହ ପକ୍ଷେ ବହୁ ଘଣ୍ଟାବ୍ୟାପୀ ନିଦ୍ରାଠାରୁ କେତେକ ମିନିଟ୍ ନିସ୍ତବ୍ଧ ନୀରବତା ଦ୍ୱାରା ଅଧିକ ବିଶ୍ରାମ ମିଳେ ।" ଆହୁରି ଶ୍ରୀମା କହୁଅଛନ୍ତି, "ଯେବେ ଇଚ୍ଛାନୁସାରେ ମନକୁ ନୀରବ କରିପାର, ଗ୍ରହଣଶୀଳ ନୀରବତା ମଧ୍ୟରେ ତାକୁ ଏକାଗ୍ର କର, ତେବେ ସକଳ ସମସ୍ୟାର ସମାଧାନ ହେବ ।"

ଆମ୍ଭମାନଙ୍କ ସାଧାରଣ ଶିକ୍ଷାରେ ମାନସିକ ଶିକ୍ଷାର ପ୍ରଚୁର ଦିଗରେ ବ୍ୟାପକ ଚେଷ୍ଟା ଚାଲିଛି, କିନ୍ତୁ ମାନସିକ ଶିକ୍ଷାର ଏହି ପ୍ରଧାନ ଦିଗଟି ପ୍ରତି କାହାରି ଦୃଷ୍ଟି ପଡ଼ି ନାହିଁ । ମାନସିକ ଶିକ୍ଷାର ଏହି ଦିଗଟି ପ୍ରତି ଶ୍ରୀଅରବିନ୍ଦ ଅନ୍ତର୍ଜାତିକ ଶିକ୍ଷା-କେନ୍ଦ୍ରରେ କିପରି ଦୃଷ୍ଟି ଦିଆହୋଇଛି ତାହା ପରେ କୁହାଯିବ ।

# ଚୈତ୍ୟ-ଶିକ୍ଷା ଓ ଆଧ୍ୟାତ୍ମିକ ଶିକ୍ଷା :

ଶାରୀରିକ, ପ୍ରାଣିକ ଓ ମାନସିକ ଶିକ୍ଷାର ପରେ ଆସେ ଚୈତ୍ୟ ଓ ଆଧ୍ୟାତ୍ମିକ ଶିକ୍ଷା । ବ୍ୟକ୍ତିତ୍ୱର ଗଠନ, ବିକାଶ ଓ ଅଭିବୃଦ୍ଧି ସକାଶେ ଶାରୀରିକ, ପ୍ରାଣିକ ଏବଂ ମାନସିକ ଶିକ୍ଷା ଖୁବ୍ ଉପକାରୀ, ଏପରିକି ଅପରିହାର୍ଯ୍ୟ । ମନୁଷ୍ୟର ଅସଂସ୍କୃତ, ଅସଂଯତ ଓ ଖଣ୍ଡ-ବିଖଣ୍ଡ ଜୀବନକୁ ଏକ ସଂହତ, ସୁସ୍ପଷ୍ଟ ଓ ଯଥାଯଥ ସବଳ ରୂପ ଦେବାକୁ ଏହି ଶିକ୍ଷା ସର୍ବାଦୌ ଆବଶ୍ୟକ । ଏହାହିଁ ମନୁଷ୍ୟକୁ ଅଚେତନ ଜଡ଼ ଓ ପ୍ରାଣମୟ ଜଗତ ମଧ୍ୟରୁ ଏକ ଦୃଢ଼ ଓ ଅଖଣ୍ଡ ବସ୍ତୁ ରୂପେ ଗଢ଼ି ତୋଳେ । ପୁନଶ୍ଚ ଏହି ସବୁ ଶିକ୍ଷା ବୃତ୍ତିମୂଳକ, ଜୀବନଯାତ୍ରା ପଥରେ ଏକାନ୍ତ ସହାୟକ । କିନ୍ତୁ ଏସବୁ ଶିକ୍ଷା ଛଡ଼ା ଆଉ ଏକ ପ୍ରକାର ଶିକ୍ଷା ଅଛି ଯାହା ମନୁଷ୍ୟକୁ ଏକ ବୃହତ୍ତର, ମହତ୍ତର ଓ ଉଦାରତର ଲକ୍ଷ୍ୟ ଓ ଆଦର୍ଶ ସମ୍ବନ୍ଧରେ ସଚେତନ କରାଏ । ମନୁଷ୍ୟ କେବଳ ଦେହ-ପ୍ରାଣ-ମନ-ବିଶିଷ୍ଟ ସତ୍ତା ନୁହେଁ, ତାହା ମଧ୍ୟରେ ଏକ ବିଶାଳ ଭୂମା-ଚେତନାର ସ୍ପର୍ଶ ରହିଛି । ଏହି ଚେତନାର ବିକାଶ ଓ ଅଭିବୃଦ୍ଧି ଦ୍ୱାରା ଜୀବନର ପୁନର୍ଗଠନ କରିବାହିଁ ଚୈତ୍ୟ-ଶିକ୍ଷାର ପ୍ରାରମ୍ଭ ମାତ୍ର ।

ଚୈତ୍ୟ ଓ ଆଧ୍ୟାତ୍ମିକ ଶିକ୍ଷା କଥା ଆଲୋଚନା କଲାବେଳେ ସାଧାରଣତଃ ମନରେ ନାନା ପ୍ରକାର ପ୍ରଶ୍ନର ଉଦୟ ହୁଏ ? ଚୈତ୍ୟ ଶିକ୍ଷାର ବାସ୍ତବ ସ୍ୱରୂପ କ'ଣ ? ଚୈତ୍ୟ-ପୁରୁଷ କିଏ ? ଚୈତ୍ୟ-ଶିକ୍ଷା କ'ଣ ଧର୍ମ-ଶିକ୍ଷା ? ଏହା କ'ଣ ଏକ ମନସ୍ତାତ୍ତ୍ୱିକ ଶୃଙ୍ଖଳା, ନିୟମନ ନା, ଆଧ୍ୟାତ୍ମିକ ଉପଲବ୍ଧି ? ଅଥବା ନୈତିକ ବିଧାନ ? ଏହି ଶିକ୍ଷା କି ଉପାୟରେ ସମ୍ଭବ ହୁଏ ? ଶ୍ରୀଅରବିନ୍ଦ ଶିକ୍ଷା-କେନ୍ଦ୍ରରେ ଏହି

ଶିକ୍ଷା କପରି ଅନୁସୃତ ହୁଏ ? ଏହି ସବୁ ପ୍ରଶ୍ନର ଏଠାରେ ଆଲୋଚନା ହେବା ଉଚିତ ।

ମାନବ-ବ୍ୟକ୍ତିତ୍ୱର ବିଭିନ୍ନ ଅଂଶ ସମ୍ବନ୍ଧେ ଆଲୋଚନା କଲାବେଳେ ଏକଥା ସ୍ପଷ୍ଟଭାବେ ମନେ ରଖିବାକୁ ହେବ ଯେ ଚୈତ୍ୟ-ପୁରୁଷ ଆମ୍ଭମାନଙ୍କର କେନ୍ଦ୍ରୀୟ ସତ୍ତା (Central Being), ଅନ୍ତରାତ୍ମା, ଅନ୍ତଃ-ପୁରୁଷ, ହୃଦ୍-ପୁରୁଷ । ପ୍ରତ୍ୟେକ ମନୁଷ୍ୟ ମଧ୍ୟରେ ଦୁଇଟି ସତ୍ତା ବାସ କରନ୍ତି—ଚୈତ୍ୟ-ପୁରୁଷ ଓ ଆତ୍ମା । ଚୈତ୍ୟ-ପୁରୁଷ ଭଗବାନଙ୍କ ଅଂଶ, ସେ ହୃଦୟ-ଗୁହାର ମଧ୍ୟରେ ଅବସ୍ଥିତ । ଅନ୍ୟ ସତ୍ତା ହେଉଛି ଆତ୍ମା ସେ ଶରୀରର ଊର୍ଦ୍ଧ୍ୱରେ ଦ୍ରଷ୍ଟାରୂପେ ସ୍ଥିତ । ଭଗବାନଙ୍କର ପ୍ରତିଭୂ କିନ୍ତୁ ଅପରିବର୍ତ୍ତନୀୟ । ଚୈତ୍ୟ-ସତ୍ତା କ୍ରମବିବର୍ତ୍ତନ ଅନୁସାରେ ବିକାଶଶୀଳ । ସେ ଊର୍ଦ୍ଧ୍ୱସ୍ଥ ଆତ୍ମା ପରି ନିଷ୍କ୍ରିୟ,ଅପରିବର୍ତ୍ତନୀୟ ନୁହନ୍ତି । ସେ ମନ-ପ୍ରାଣ-ଶରୀରର ପଶ୍ଚାତ୍‌ରେ ରହି ସମସ୍ତ ସତ୍ତା ଉପରେ ପ୍ରଭାବ ନିକ୍ଷେପ କରନ୍ତି । ଶ୍ରୀଅରବିନ୍ଦ "ଯୋଗ-ପ୍ରଦୀପ"ପୁସ୍ତକରେ ଲେଖି ଅଛନ୍ତି, "ଏହି ଅଧସ୍ତନ ଭୁବନରେ ଅପରା ପ୍ରକୃତିରେ ଭଗବାନଙ୍କର ସେହି ଚିରନ୍ତନ ଅଂଶ ଅନ୍ତରାତ୍ମା ରୂପ, ଦିବ୍ୟ ଅଗ୍ନିର ସ୍ଫୁଲିଙ୍ଗରୂପେ ଆବିର୍ଭୂତ ହୁଅନ୍ତି ଏବଂ ସେ ବ୍ୟକ୍ତିଗତ କ୍ରମ-ବିକାଶ ଓ ମନ-ପ୍ରାଣ-ଦେହମୟ ସତ୍ତାକୁ ଧାରଣ କରି ରହିଅଛନ୍ତି । ଚୈତ୍ୟ-ପୁରୁଷହିଁ ହେଉଛନ୍ତି ଏହି ସ୍ଫୁଲିଙ୍ଗ ଯେ କ୍ରମ-ବର୍ଦ୍ଧିତ ହୋଇ ଅଗ୍ନିଶିଖାରେ ପରିଣତ ହୁଅନ୍ତି, ଚେତନାର ବିକାଶ ସଙ୍ଗେ ସଙ୍ଗେ ବିକଶିତ ହୁଅନ୍ତି ।" ଅନ୍ୟ ଏକ ପ୍ରସଙ୍ଗରେ ସେ ଚୈତ୍ୟ-ପୁରୁଷଙ୍କ ସମ୍ବନ୍ଧେ ବର୍ଣ୍ଣନା କରି କହୁଅଛନ୍ତି, "ମନୁଷ୍ୟ ତାହାର ଅନ୍ତରାତ୍ମା ବା ଜୀବାତ୍ମାକୁ ଜାଣେ ନାହିଁ, ସେ ଜାଣେ କେବଳ ନିଜର ଅହଂକୁ ବା ନିଜର ଦେହ-ପ୍ରାଣର ନିୟାମକ ମନୋମୟ

ପୁରୁଷଙ୍କୁ, କିନ୍ତୁ ଆହୁରି ଗଭୀର ସ୍ତରରେ ପହଞ୍ଚିଲେ ସେ ଚିହ୍ନିପାରେ ତା'ର ଅନ୍ତରାତ୍ମା ବା ଚୈତ୍ୟ-ପୁରୁଷଙ୍କୁ ନିଜର ଯଥାର୍ଥ କେନ୍ଦ୍ର ବୋଲି, ଆପଣାର ହୃଦପୁରରେ ପ୍ରତିଷ୍ଠିତ ପୁରୁଷ ବୋଲି। ବିବର୍ତ୍ତନର କେନ୍ଦ୍ରୀୟ ସତ୍ତା ହେଲେ ଚୈତ୍ୟ-ପୁରୁଷ, ସେ ଭଗବାନଙ୍କର ସନାତନ ଅଂଶ, ଜୀବାତ୍ମାରୁ ଉଦ୍ଭୂତ ଏବଂ ତାହାର ପ୍ରତିଭୂ ଏବଂ ଯେତେ-ବେଳେ ପୂର୍ଣ୍ଣ ଚେତନାର ଆବିର୍ଭାବ ହୁଏ, ସେତେବେଳେ ଜୀବାତ୍ମା ଓ ଅନ୍ତରାତ୍ମା ଏକତ୍ର ମିଶି ଯାଆନ୍ତି।" 'ଶିକ୍ଷା' ପୁସ୍ତକରେ ଶ୍ରୀମା ଅନ୍ତରାତ୍ମାକୁ ନିର୍ଦ୍ଦେଶ କରିବାକୁ ଯାଇ କହିଅଛନ୍ତି, "ସକଳ ସୃଷ୍ଟିର ଆଦି ଉତ୍ସର ଅସଂଖ୍ୟ ସମ୍ଭବନା ମଧ୍ୟରେ ସେ ହେଲି ଗୋଟିଏ ସୂତ୍ରଧାରି; ଏକ ଅବିଭାଜ୍ୟ ଏବଂ ବିଶ୍ୱବ୍ୟାପୀ ଚୈତନ୍ୟର ସଦା-ଯୂତାରେ ନିଜକୁ ଦେଶ ଓ କାଳ ମଧ୍ୟରେ ନିକ୍ଷେପ କଲି, ବ୍ୟଷ୍ଟି ନିୟମ ସତ୍ୟ ମଧ୍ୟରେ ନିଜକୁ ସ୍ଥୂଳରେ ଅଭିଭୂତ କରି ଧରିଲି, ଏହି-ପରି ଗୋଟିଏ କ୍ରମ-ଊର୍ଦ୍ଧ୍ୱଧାରାରେ ହୋଇ ଉଠିଲି ତାହାର ଅନ୍ତରାତ୍ମା ବା ଚୈତ୍ୟ-ପୁରୁଷ।" ଚୈତ୍ୟ-ପୁରୁଷଙ୍କ ସମ୍ବନ୍ଧରେ ବହୁ ବର୍ଣ୍ଣନା ଉପନିଷଦ, ଗୀତା ଓ ବୈଷ୍ଣବ ଶାସ୍ତ୍ରମାନଙ୍କରେ ଦେଖିବାକୁ ମିଳେ। କଠୋପନିଷଦରେ ଅଛି, "ଅଙ୍ଗୁଷ୍ଠମାତ୍ରଃ ପୁରୁଷୋଽନ୍ତରାତ୍ମା ସଦା ଜନାନାଂ ହୃଦୟେ ସନ୍ନିବିଷ୍ଟଃ" ଇତ୍ୟାଦି। ମୋଟରେ କହିବାକୁ ଗଲେ ମନୁଷ୍ୟ ମଧ୍ୟସ୍ଥ ଭାଗବତ ସତ୍ତାହିଁ ତାହାର ଚୈତ୍ୟ-ପୁରୁଷ। ଚୈତ୍ୟ-ପୁରୁଷଙ୍କ ସ୍ୱାଭାବିକ ଗତି ଭଗବାନଙ୍କ ଆଡ଼କୁ। ଚୈତ୍ୟ-ପୁରୁଷଙ୍କ ଯଥାର୍ଥ ଭାବ ହେଲି ନିଜକୁ ଶିଶୁ ରୂପେ, ଭଗବାନଙ୍କ ସନ୍ତାନ ଓ ଭକ୍ତ ରୂପେ ଅନୁଭବ କରିବା। ଏହାର ଜାଗୃତି ବିନା କେହି ବି ଭଗବାନଙ୍କ ଆଡ଼କୁ ଯାଇପାରେ ନାହିଁ। ଯାହାଙ୍କର ଚୈତ୍ୟ-ପୁରୁଷ ନିଷ୍କ୍ରିୟ କିନ୍ତୁ ମନ ବୁଦ୍ଧି ବିକଶିତ, ସେମାନଙ୍କ

ବସ୍ତୁର ଅଭ୍ରାନ୍ତ ବା ଜ୍ୟୋତିର୍ମୟ ନୁହେଁ । ଚୈତ୍ୟ-ପୁରୁଷଙ୍କ ଜାଗରଣହିଁ ଆମ୍ଭମାନଙ୍କର ନବ-ଜନ୍ମ (New Birth) ଏବଂ ଯଥାର୍ଥ ଆତ୍ମୋନ୍ମୀଳନ ।

ଚୈତ୍ୟ-ପୁରୁଷଙ୍କ ଅନୁଭୂତ ଜୀବନରେ ବହୁଭାବରେ ଆସିଥାଏ । ସାଧାରଣତଃ ଚୈତ୍ୟ-ପୁରୁଷ ପର୍ଦ୍ଦାର ଅନ୍ତରାଳରେ ରହି ଅଜଣା ଓ ଅଚିହ୍ନା ଭାବରେ ବ୍ୟକ୍ତିକୁ ସ୍ପର୍ଶ କରନ୍ତି, ପ୍ରଭାବିତ କରନ୍ତି, କେବେ କେବେ ତାହା ମଧ୍ୟରେ ଭାଗବତ ନିର୍ଦ୍ଦେଶର ଅଗ୍ରନିକ ସୂଚନା ଦିଅନ୍ତି । କେବେ ନାନା ବିପଦ ଜଞ୍ଜାଳ ମଧ୍ୟରେ ଭଗବାନଙ୍କ ଅହେତୁକୀ କୃପା ଲାଭ କରନ୍ତି । କେବେ କେବେ ଏକ ପୂର୍ଣ୍ଣତର ଓ ମହତ୍ତର ଜୀବନ ପ୍ରାପ୍ତି ନିମିତ୍ତ ସକଳ ବାଧା-ବିଘ୍ନକୁ ବରଣ କରି ଆଗେଇ ଚାଲନ୍ତି । ବହୁ ମହାପୁରୁଷ, ସାଧୁ, ସନ୍ଥ ଏହାଙ୍କର ଚାଳନାରେ ଚାଳିତ ହୁଅନ୍ତି । ବହୁ ଶିଶୁଙ୍କ ମଧ୍ୟରେ ବି ଏହି ଚୈତ୍ୟ-ପୁରୁଷଙ୍କ କ୍ରିୟା ଦେଖାଯାଏ । ସେମାନଙ୍କ ସ୍ୱତଃସ୍ଫୂର୍ତ୍ତିତା, ନିଷ୍କପଟତା, ସରଳତା ଓ ସତ୍ୟ-ଦୃଷ୍ଟି ହିଁ ଚୈତ୍ୟ-ପୁରୁଷଙ୍କ ପ୍ରଭାବ । ଦୁଃଖର ବିଷୟ କିନ୍ତୁ ପିତାମାତା ଶିଶୁର ଏହି ଅବସ୍ଥାକୁ ବୁଝି ନ ପାରି ତାକୁ ଅଯଥା ବହିର୍ମୁଖୀ କରନ୍ତି । ଆମ୍ଭମାନଙ୍କ ମଧ୍ୟରେ ବେଳେ ବେଳେ ପ୍ରଶ୍ନ ଉଠେ : ଏହି ଜୀବନର ଲକ୍ଷ୍ୟ କ'ଣ, ଜୀବନ-ଯାତ୍ରାର ଉଦ୍ଦେଶ୍ୟ କ'ଣ, ବିଶ୍ୱ ସହିତ, ମାନବ-ସମାଜ ସହିତ ଆମର ସମ୍ବନ୍ଧ କ'ଣ ? ଭଗବାନଙ୍କ ପାଖେ ବ୍ୟକ୍ତିର ଆତ୍ମ-ନିବେଦନ କି ବସ୍ତୁ ? ଏହି ଜୀବନର ପରମ ରହସ୍ୟ ଉଦ୍‌ଘାଟନ କରିବା ସମ୍ଭବ କି ? ଏହିସବୁ ପ୍ରଶ୍ନର ଉତ୍ଥାପନ ମୂଳରେ ଚୈତ୍ୟ-ପୁରୁଷଙ୍କ କିଛି ପ୍ରଭାବ ମଧ୍ୟ ଥାଏ । ଅନେକଙ୍କ ମନରେ ଏକ ସ୍ୱତଃ ଆତ୍ମ-ଆବିଷ୍କାର ଓ ରହସ୍ୟ-ମୟ ଧର୍ମଭାବର ପ୍ରେରଣା ଅତି ବାଲ୍ୟକାଳରୁ ଦେଖା ଯାଇଥାଏ ।

ଏହାର ଅର୍ଥ ତାଙ୍କ ମଧ୍ୟରେ ଚୈତ୍ୟ-ପୁରୁଷ ଜାଗ୍ରତ ଥିଲେ । ତାଙ୍କର ପୂର୍ବଜନ୍ମରୁ ସାଧନାଦ୍ୱାରା ଚୈତ୍ୟ-ପୁରୁଷଙ୍କର ବିକାଶ ହୋଇଥିବାରୁ ଏହାର ଜାଗୃତ ବାଲ୍ୟାବସ୍ଥାରୁହିଁ ସମ୍ଭବ ହେଲା ।

ଏହି ଚୈତ୍ୟ-ଉପଲବ୍ଧି ସକାଶେ ଏକ ପ୍ରସ୍ତୁତି ମଧ୍ୟ ଲୋଡ଼େ । ଏଥିପାଇଁ ସର୍ବାଦୌ ଆବଶ୍ୟକ ହେଲା ଆନ୍ତରିକତା, ନିଷ୍ଠା, ଐକାନ୍ତିକତା ଓ ସ୍ୱତଃସ୍ଫୂର୍ତ୍ତିତା । ଯେ ଆମ୍ଭମାନଙ୍କ ଜୀବନର ପରମ ଧ୍ୟେୟ ବସ୍ତୁ, ତାଙ୍କୁ ଆବିଷ୍କାର କରିବାରେ କୌଣସି ପ୍ରକାର ଶଠତା ବା ଠକାମି ଚଳେ ନାହିଁ । ଏଥିପାଇଁ କୌଣସି ଯୁକ୍ତି-ତର୍କ ବା ବୁଦ୍ଧିଗତ ଜ୍ଞାନର ପ୍ରୟୋଜନ ନାହିଁ । ଚୈତ୍ୟ ଅନୁଭୂତି ଏକା-ବେଳକେ ସତ୍ୟ ଓ ଅଭ୍ରାନ୍ତ ଅନୁଭୂତି । ବିଶେଷତଃ ଏହି ପଥରେ ଆଗେଇ ଯିବାକୁ ଦରକାର ଏକ ଦୃଢ଼, ଗଭୀର ଓ ତୀବ୍ର ସଂକଳ୍ପ । ଏହି ଆବିଷ୍କାର ଏକାନ୍ତ ବ୍ୟକ୍ତିଗତ । ଲକ୍ଷ୍ୟରେ ପହଞ୍ଚିବା ପାଇଁ ଆବଶ୍ୟକ ଅଟଳ ସଂକଳ୍ପ, ଦୃଢ଼ ଇଚ୍ଛାଶକ୍ତି, ଅକ୍ଳାନ୍ତ ଅଧ୍ୟବସାୟ । କହିବାକୁ ଗଲେ ଏ କ୍ଷେତ୍ରରେ ପ୍ରତ୍ୟେକ ବ୍ୟକ୍ତିକୁ ନିଜ ପଥ କାଟି ଚାଲିବାକୁ ହୁଏ । ସାହସ ଓ ସହିଷ୍ଣୁତାର ସହିତ ଗୋଟାଏ ଅଗମ୍ୟ ଅରଣ୍ୟରେ ଭେଦ କରି ଦେଶ ଆବିଷ୍କାର କଲା ଭଳି ଚୈତ୍ୟ-ଆବିଷ୍କାର ବୋଧହୁଏ । ବିଶେଷତଃ ଏହି ଆବିଷ୍କାର ଲକ୍ଷ୍ୟ ସାଧ-ନରେ ବ୍ୟକ୍ତି ଏକମୁଖୀ ହେଲେ ସଫଳତା ଶୀଘ୍ର ଆସେ । ଏଠାରେ ଶ୍ରେଷ୍ଠ ବଡ଼ ବୋଲି କିଛି ନାହିଁ । ସକଳ କାର୍ଯ୍ୟ, ସକଳ ଚିନ୍ତା, ସକଳ ପ୍ରକାର ପରିସ୍ଥିତିରେ ଆମ୍ଭମାନଙ୍କ ଜୀବନର ଏହି ମହତ୍ତ୍ୱ ଓ ବିରାଟ ଲକ୍ଷ୍ୟ ନିରନ୍ତର ପରିସ୍ଫୁଟ ହେବା ବାଞ୍ଛନୀୟ । ସମଗ୍ର ଜୀବନକୁ ଭଗବତ୍ ଅଭିମୁଖୀ କରି ମନରେ ସର୍ବଦା ସମର୍ପଣ ଓ ନିବେଦନର ଭାବ ରଖିବାକୁ ହେବ । ଭୋଜନ କରିବା ପୂର୍ବରୁ

କିଛି ସମୟ ଏକାଗ୍ରତା ସହ ଆହାରକୁ ପ୍ରସାଦରୂପେ ସେବନ କରିବ । ସେହିପରି ଶୋଇବା ପୂର୍ବରୁ କିଛିକ୍ଷଣ ଏକାଗ୍ର ହେବ । ସଂକଳ୍ପ କରିବ ଯେପରି ନିଦ୍ରା କାଳରେ ସ୍ନାୟୁବିକ କ୍ଲାନ୍ତି ଦୂର ହୁଏ ଏବଂ ମସ୍ତିଷ୍କରେ ସ୍ଥିରତା ଓ ପ୍ରଶାନ୍ତି ଦେଖାଦିଏ, ଯାହା ଫଳରେ ନିଦ୍ରାଭଙ୍ଗ ପରେ ସାଧନା-ପଥରେ ଦ୍ୱିଗୁଣ ଉତ୍ସାହରେ ଅଗ୍ରଗତି କରି ହୁଏ । ସେହିପରି ପ୍ରତ୍ୟେକ କର୍ମ ମଧ୍ୟ ଭଗବାନଙ୍କୁ ଅର୍ପଣ କରିବାକୁ ସଂକଳ୍ପ କରିବ । ଏହି ଶିକ୍ଷାର ମୂଳମନ୍ତ୍ର ହେଉଛି "Remember and Offer" ଅର୍ଥାତ୍ "ସ୍ମରଣ ରଖ ଓ ସମର୍ପଣ କର ।" ଅନ୍ତରର ଭାଗବତୀ ଶକ୍ତିର କ୍ରିୟା ଓ ଉତ୍ତରୋତ୍ତର ସଞ୍ଚାଳନା ଏହାଦ୍ୱାରହିଁ ଅନୁଭୂତ ହୁଏ ।

ଏହିପରି ନିରବଚ୍ଛିନ୍ନ ପ୍ରୟାସ, ଅକ୍ଳାନ୍ତ ଉଦ୍ୟମ ଓ ତୀବ୍ର ଅଭୀପ୍ସା ଫଳରେ ଏକ ଦ୍ୱାର ଖୋଲିଯାଏ ଏବଂ ବ୍ୟକ୍ତି ନିଜ ଅନ୍ତରରେ ଏକ ଦିବ୍ୟ ପ୍ରେରଣାର ଇଙ୍ଗିତ ପାଏ । ସେତେବେଳେ ଏହି ସ୍ଥୂଳ-ଜଗତର ଅତି ନଗଣ୍ୟ ବସ୍ତୁ ମଧ୍ୟ ଅନ୍ୟ ପ୍ରକାର ପ୍ରତିଭାତ ହୁଏ । ନିଜ ଭିତରର ଭାଗବତ ଅନୁଭୂତି ସକଳ ସ୍ତରରେ ଭାଗବତ ଅନୁଭୂତି ଆଣିଦିଏ । ଏହା ଚୈତ୍ୟ ରୂପାନ୍ତର ଓ ସିଦ୍ଧିର ଗୋଟାଏ ଦିଗ । ଏହି ଭାଗବତ ପ୍ରାପ୍ତିର କ୍ରିୟାଧାରା ବଢ଼ିଗଲେ ଏବଂ ବ୍ୟକ୍ତି ଏହାପରେ ଆଧ୍ୟାତ୍ମିକ ଶିକ୍ଷାର କ୍ଷେତ୍ରରେ ଉପନୀତ ହୁଏ । ଚୈତ୍ୟ ସିଦ୍ଧିଠାରୁ ଆଧ୍ୟାତ୍ମିକ ସିଦ୍ଧି ଆହୁରି ବୃହତ୍ତର ସିଦ୍ଧି ଏବଂ ଏହି ସିଦ୍ଧି ଫଳରେ ଊର୍ଦ୍ଧ୍ୱଲୋକର ଜ୍ୟୋତି, ଶକ୍ତି, ଆନନ୍ଦ, ଶାନ୍ତି ଆଦି ମହନୀୟ ଭାଗବତୀ ଶକ୍ତି ଅବତରଣ କରି ବ୍ୟକ୍ତିର ଆଧାରରେ ସ୍ଥାୟୀ-ରୂପେ ପ୍ରତିଷ୍ଠିତ ହୁଅନ୍ତି । ସେତେବେଳେ ବ୍ୟକ୍ତିର ଜଡ଼ ଶରୀର ପର୍ଯ୍ୟନ୍ତ ବି ଚିନ୍ମୟ ବସ୍ତୁ ହୋଇଉଠେ । ଏସବୁ ହେବା ସତ୍ତ୍ୱେ

ପ୍ରକୃତିର ରୂପାନ୍ତର ଘଟେ ନାହିଁ । ପ୍ରକୃତିର ରୂପାନ୍ତର ଘଟେ ଏକମାତ୍ର ବିଶାଳ ଅତି-ମାନସ ଅଧ୍ୟାତ୍ମ ଶକ୍ତିର କ୍ରିୟା ଫଳରେ । ସୁତରାଂ ଚୈତ୍ୟ ଓ ଅଧ୍ୟାତ୍ମ ଶିକ୍ଷାର ଶେଷ ପରିଣାମ ରୂପେ ଦେଖା ଦିଏ ଅତିମାନସ ଶିକ୍ଷା । ଅତିମାନସ ସିଦ୍ଧିର ଏକମାତ୍ର ଅବତାରଣା କରିଅଛନ୍ତି ଶ୍ରୀଅରବିନ୍ଦ ଓ ଶ୍ରୀମା । ସ୍ୱୟଂ ଶ୍ରୀଅରବିନ୍ଦ ଏହି ଶକ୍ତିକୁ ଅବତରଣ କରାଇ ଏହି ଧରାପୃଷ୍ଠରେ ଅଧ୍ୟାତ୍ମ-ସାଧନାର ନବଯୁଗ ଆନୟନ କରିଛନ୍ତି । ଶ୍ରୀମା ଆଜି ଏହି ଶକ୍ତି ସ୍ୱୟଂ ଧାରଣ କରି ମାନବ-ପ୍ରକୃତି ଉପରେ କ୍ରିୟା କରୁଅଛନ୍ତି । ଅତିମାନସର କ୍ରିୟା ଫଳରେ ପୃଥିବୀରେ ଦେଖାଦେବ ନୂତନ ମାନବ-ଜୀବନ ଓ ନୂତନ ମାନବ-ଜାତି । ଅତିମାନସର ପ୍ରାଥମିକ କ୍ରିୟା ଫଳରେ ମନୁଷ୍ୟ ମଧ୍ୟରେ ଏକ ଉର୍ଦ୍ଧ୍ୱତନ ଚେତନାର ବିକାଶ ହେବ ଓ ତାର ଅଜ୍ଞାନ ଚେତନା ଜ୍ୟୋତିର୍ମୟ ହେବ । ଏହି ଶକ୍ତି କ୍ରମଶଃ ଆଭ୍ୟନ୍ତରୀଣ ମନ-ପ୍ରାଣକୁ ମଧ୍ୟ ପରିବର୍ତ୍ତନ କରିବ । ମନୁଷ୍ୟ-ପ୍ରକୃତିର ଆମୂଳଚୂଳ ପରିବର୍ତ୍ତନ ଓ ଅତିମାନସ ଜାତି ସ୍ଥାପନା କେବଳ ଏହି ଶକ୍ତି ବଳରେହିଁ ହୋଇପାରିବ ।

ଶ୍ରୀଅରବିନ୍ଦ ଅନ୍ତର୍ଜାତିକ ଶିକ୍ଷା-କେନ୍ଦ୍ରର ମୂଳ ଲକ୍ଷ୍ୟ ସମ୍ବନ୍ଧରେ ବର୍ଣ୍ଣନା କରିବାକୁ ଯାଇ ଆମ୍ଭେମାନେ କହିଅଛୁ ଯେ ପୃଥିବୀରେ ନୂତନ ଜୀବନ ସ୍ଥାପନ ଓ ନୂତନ ସମାଜ-ଗଠନହିଁ ଏହାର ଉଦ୍ଦେଶ୍ୟ । ଏହି ଲକ୍ଷ୍ୟର ସୁସ୍ପଷ୍ଟ ଫଳାଫଳ ଏ ପର୍ଯ୍ୟନ୍ତ ବାସ୍ତବ କ୍ଷେତ୍ରରେ ସାଧାରଣ ଚକ୍ଷୁରେ ଦେଖିବାକୁ ହେବ । ତେବେ ଏହି ଚୈତ୍ୟ, ଅଧ୍ୟାତ୍ମ ଓ ଅତିମାନସ ଶିକ୍ଷା ଏଠାରେ ଅନୁସୃତ ହୁଏ କିପରି ? ଏଠାରେ ଚୈତ୍ୟ ଓ ଆଧ୍ୟାତ୍ମିକ ଶିକ୍ଷାର ମୂଳଭିତ୍ତି ହେଲା ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କ ଅଧ୍ୟାତ୍ମ ବ୍ୟକ୍ତିତ୍ୱ,

ଅଧ୍ୟାତ୍ମ-ସାଧନା, ଅଧ୍ୟାତ୍ମ-ପ୍ରଭାବ ଓ ଅଧ୍ୟାତ୍ମ-କ୍ରିୟା । ସ୍ୱୟଂ ଶ୍ରୀମା ଏହି ଶକ୍ତିକୁ ଧାରଣ କରି କ୍ରିୟା କରୁଅଛନ୍ତି । ଯେଉଁମାନେ ଶ୍ରଦ୍ଧା, ଭକ୍ତି, ସରଳତା ସହ ନିଜକୁ ମା'ଙ୍କ ପ୍ରତି ଖୋଲି ଧରିପାରିବେ ସେମାନେ ଏହି ଶିକ୍ଷାର ସକଳ ଫାବଛ ତା'ର ହୋଇପିବେ । ଏଥିପାଇଁ ଏଠାରେ ଛାତ୍ରମାନଙ୍କୁ କୌଣସି ପ୍ରକାର ଧର୍ମଗ୍ରନ୍ଥ ବା ନୀତିଶାସ୍ତ୍ର ବାଧ୍ୟକରି ପଢ଼ିବାକୁ ଦିଆଯାଏ ନାହିଁ । କୌଣସି ପ୍ରକାର କାର୍ଯ୍ୟରେ ବି ଏଠାରେ ବାଧ୍ୟବାଧକତା ନାହିଁ । ଆଶ୍ରମର ସକଳ ସ୍ତରରେ, ସବୁ କ୍ଷେତ୍ରରେ ରହିଛି ଏକ ଶାଶ୍ୱତ ଅଧ୍ୟାତ୍ମ-ଶକ୍ତିର ବ୍ୟାପକ ଖେଳା ଏବଂ ଏହାହିଁ ଏକ ତୀବ୍ର ଆଧ୍ୟାତ୍ମିକ ବାତାବରଣ (Spiritual atmosphere) ସୃଷ୍ଟି କରିଛି । ଏହି ବାତାବରଣରେ କେହି ଲୋକ, କେହି ଛାତ୍ର ରହିଲେ ସ୍ୱାଭାବିକ ରୂପେ ମା'ଙ୍କ କ୍ରିୟା ପ୍ରତି ଉନ୍ମୁକ୍ତ ହୁଅନ୍ତି । ଯେଉଁମାନେ ହୃଦୟର ଅମାୟିକ ଶ୍ରଦ୍ଧା ଓ ନିର୍ମଳତା ସହ ନିଜର ସବୁକିଛିକୁ ମା'ଙ୍କ ଚରଣରେ ଅର୍ପଣ କରି ଆଗେଇ ଯିବାକୁ ଚାହିଁଛନ୍ତି, ମା' ସେମାନଙ୍କର ଭୌତିକ ଓ ଆଧ୍ୟାତ୍ମିକ ଜୀବନର ସମସ୍ତ ଭାର ଗ୍ରହଣ କରିଛନ୍ତି । ଏତଦ୍ ବ୍ୟତୀତ ସବଳ, ସୁସ୍ଥ, ନିର୍ମଳ ଚୈତ୍ୟ-ଜୀବନର ଆଦର୍ଶ, ଉଦାହରଣ ଓ କାର୍ଯ୍ୟକାରିତା ଏଠାରେ ଚୈତ୍ୟ ଶିକ୍ଷାର ଅନ୍ୟ ଗୋଟିଏ ଦିଗ । ଯେକୌଣସି ବ୍ୟକ୍ତି ଆଶ୍ରମରେ କିଛି ଦିନ ରହିଲା ପରେ ଏହା ସ୍ପଷ୍ଟରୂପେ ହୃଦୟଙ୍ଗମ କରେ । ବାହାରରେ ରହି ମଧ୍ୟ ମା'ଙ୍କ ପ୍ରତି ଉନ୍ମୁକ୍ତ ରହିଲେ ଏହି ଚୈତ୍ୟ ଓ ଆଧ୍ୟାତ୍ମିକ ଶିକ୍ଷା ଗ୍ରହଣ କରାଯାଇପାରେ । ଶ୍ରୀଅରବିନ୍ଦ ଏହି ବିଷୟ ପୁଙ୍ଖାନୁପୁଙ୍ଖ ରୂପେ ତାଙ୍କର ନାନା ରଚନାବଳୀରେ ଆଲୋଚନା କରିଛନ୍ତି । ଏହା ସତ୍ୟ ଯେ ଶ୍ରୀଅରବିନ୍ଦଙ୍କ ଯୋଗ-ସାଧନା ଅନ୍ୟାନ୍ୟ ସକଳ ଯୋଗଠାରୁ ଅଧିକ

କଠିନ ଓ ଜଟିଳ, କିନ୍ତୁ ପକ୍ଷାନ୍ତରରେ ଏହା ବି ସତ୍ୟ ଯେ ଏହି ସାଧନା ଅନ୍ୟାନ୍ୟ ସାଧନାଠାରୁ ଅଧିକ ସରଳ ଓ ସହଜ । ସାଧନାର ଅତି ସହଜ ପଥ ହେଲା ସମର୍ପଣ, ଅଭୀପ୍ସା, ଓ ତ୍ୟାଗ । ଯେଉଁମାନେ ଜୀବନରେ ଯଥାର୍ଥରେ ଅଧ୍ୟାତ୍ମ-ଉନ୍ନୟନ ଚାହାନ୍ତି ସେମାନେ କି ଗଭୀର ଭାବରେ ଓ କେତେ ଶୀଘ୍ର ଶ୍ରୀଅରବିନ୍ଦଙ୍କ ଯୋଗରେ ଅଗ୍ରଗତି କରିପାରନ୍ତି, ତାହା ଅନୁଭବୀ ବିନା ଅନ୍ୟ କେହି ସ୍ୱୀକାର କରିପାରିବ ନାହିଁ । ଆଜି ସମୟ ଆସିଛି ଯେତେବେଳେ ଜୀବନ ଓ ସମାଜ ପୁନର୍ବାର ଏକ ଅଧ୍ୟାତ୍ମ ଭିତ୍ତିରେ ସ୍ଥାପିତ ହେବ । ଶ୍ରୀଅରବିନ୍ଦ ଶିକ୍ଷା-କେନ୍ଦ୍ର ଏ ଦିଗରେ ଯେ ପଥ-ପ୍ରଦର୍ଶକ ରୂପେ କାର୍ଯ୍ୟ କରୁଛି, ଏକଥା ସମାଜର ଭବିଷ୍ୟତ ବଂଶଧରଗଣ ନିଶ୍ଚୟ ସ୍ୱୀକାର କରିବେ ।

—*—

# ଶ୍ରୀଅରବିନ୍ଦ
# ଆନ୍ତର୍ଜାତିକ ଶିକ୍ଷାକେନ୍ଦ୍ର

## ( ଦ୍ୱିତୀୟ ଭାଗ )

ସଂଗଠନ ଓ ପରିଚାଳନା

*

ଐତିହାସିକ ପୃଷ୍ଠଭୂମି

*

ଶିକ୍ଷା-କେନ୍ଦ୍ରର ଆନ୍ତର୍ଜାତିକ ସ୍ୱରୂପ

*

ଶିକ୍ଷା-କେନ୍ଦ୍ରର ବାହ୍ୟରୂପ ଓ ଗଠନ

*

ଶିକ୍ଷା-କେନ୍ଦ୍ରରେ ଛାତ୍ର ଗ୍ରହଣ

*

ଶିକ୍ଷା-କେନ୍ଦ୍ରର ଚାରୋଟି ବିଭାଗ :
କିଣ୍ଡରଗାର୍ଟେନ, ପ୍ରାଇମେରୀ,
ସେକେଣ୍ଡାରୀ, ହାଇର୍ କୋର୍ସ

*

ଶିକ୍ଷାବର୍ଷ, ଛୁଟିଦିବସ, ପରୀକ୍ଷା-ପ୍ରଣାଳୀ,
ପ୍ରମୋସନ ଓ ସାର୍ଟିଫିକେଟ୍

*

ବିଭିନ୍ନ ଶିକ୍ଷାର କାର୍ଯ୍ୟକ୍ରମ

*

ଶିକ୍ଷକ ଓ ଛାତ୍ର

*

ଶିକ୍ଷା-କେନ୍ଦ୍ରର ଫଳାଫଳ ଓ ମତାମତ

# ଶିକ୍ଷାକେନ୍ଦ୍ରର

## ସଂଗଠନ ଓ ପରିଚାଳନା :

ଏଥି ପୂର୍ବରୁ ଆମ୍ଭେମାନେ ଶ୍ରୀଅରବିନ୍ଦ-ଶ୍ରୀମା'ଙ୍କ ଶିକ୍ଷା-ଦର୍ଶନ ଶିକ୍ଷାକେନ୍ଦ୍ରରେ ପ୍ରବର୍ତ୍ତିତ ଚତୁର୍ବିଧ ଶିକ୍ଷାମାନ — ଶାରୀରିକ, ପ୍ରାଣିକ, ମାନସିକ, ଚୈତ୍ୟ ଓ ଆଧ୍ୟାତ୍ମିକ ଶିକ୍ଷା ସମ୍ବନ୍ଧେ ସଂକ୍ଷିପ୍ତ ଆଲୋଚନା କରିଅଛୁ । ବର୍ତ୍ତମାନ ଏହି ପ୍ରବନ୍ଧରେ ଶିକ୍ଷାକେନ୍ଦ୍ରର ସ୍ଥାପନା, ସଂଗଠନ, ପରିଚାଳନା, ବିଭିନ୍ନ ଶିକ୍ଷାର କାର୍ଯ୍ୟକ୍ରମ, ପାଠ୍ୟ-ନିର୍ଘଣ୍ଟ, ଅଧ୍ୟୟନ-ପ୍ରଣାଳୀ, ଶିକ୍ଷକ ଓ ଛାତ୍ରର ସମ୍ପର୍କ, ଛାତ୍ରର ଦୈନନ୍ଦିନ କାର୍ଯ୍ୟକ୍ରମ, ଶିକ୍ଷାକେନ୍ଦ୍ରର ଅନ୍ତର୍ଜାତିକ ସ୍ୱରୂପ, ଆନ୍ତର ଓ ବାହ୍ୟ ଶୃଙ୍ଖଳା, ଶିକ୍ଷାକେନ୍ଦ୍ରର ସରକାରୀ ସ୍ୱୀକୃତି, ସାଧାରଣ ଫଳାଫଳ ଓ ଶିକ୍ଷାକେନ୍ଦ୍ରର ଭବିଷ୍ୟତ ସମ୍ବନ୍ଧେ ଆଲୋଚନା କରିବା । ଶ୍ରୀଅରବିନ୍ଦ ଅନ୍ତର୍ଜାତିକ ଶିକ୍ଷାକେନ୍ଦ୍ରର ଭାର ସ୍ୱୟଂ ଶ୍ରୀମା ପ୍ରତ୍ୟକ୍ଷ ଭାବରେ ଗ୍ରହଣ କରିଛନ୍ତି । ଏପର୍ଯ୍ୟନ୍ତ ଶିକ୍ଷାକେନ୍ଦ୍ରର ଯେପରି ଗଠନ ଓ ବିକାଶ ହୋଇଛି ତାହା ଗୋଟିଏ ପଦକ୍ଷେପ ମାତ୍ର, ପରିପୂର୍ଣ୍ଣ ରୂପ ନୁହେଁ । ଧୀରେ ଧୀରେ ଏହି ଶିକ୍ଷାକେନ୍ଦ୍ର ଯେପରି ଭାବରେ ବର୍ତ୍ତମାନ ପର୍ଯ୍ୟନ୍ତ ଶ୍ରୀମା'ଙ୍କ ଚାଳନାଧୀନରେ ରହି ଗଢ଼ିଉଠିଛି ତାହାହିଁ ଏଠାରେ ବର୍ଣ୍ଣିତ ହେବ ।

# ଐତିହାସିକ ପୃଷ୍ଠଭୂମି :

ପ୍ରଥମତଃ ଶିକ୍ଷାକେନ୍ଦ୍ରର ଐତିହାସିକ ପୃଷ୍ଠଭୂମି (Historical Back ground) ସମ୍ବନ୍ଧରେ କିଛି କହିବା ଆବଶ୍ୟକ । ୧୯୧୦ ସାଲରେ ଶ୍ରୀଅରବିନ୍ଦ ପଣ୍ଡିଚେରୀକୁ ସକ୍ରିୟ ରାଜନୀତିରୁ ଭଗବତ୍ର ନିର୍ଦ୍ଦେଶକ୍ରମେ ଫେରିଆସିଲେ । ସେତେବେଳେ ଆଶ୍ରମ ସ୍ଥାପନାର କୌଣସି ସୂଚନା ନଥିଲା ବା ଲକ୍ଷ୍ୟ ନ ଥିଲା । ୧୯୧୪ ସାଲରେ ଶ୍ରୀମା ଫ୍ରାନ୍ସରୁ ଆସି ଶ୍ରୀଅରବିନ୍ଦଙ୍କୁ ପ୍ରଥମଥର ପାଇଁ ପଣ୍ଡିଚେରୀରେ ଦର୍ଶନ କଲେ । କିନ୍ତୁ ସେହି ବର୍ଷ କିଛିମାସ ପରେ ଶ୍ରୀମା ଫ୍ରାନ୍ସ ଫେରି ଯାଇଥିଲେ । ପୁନଶ୍ଚ ଶ୍ରୀମା ୧୯୨୦ ସାଲରେ ପଣ୍ଡିଚେରୀକୁ ସ୍ଥାୟୀରୂପେ ପ୍ରତ୍ୟାବର୍ତ୍ତନ କଲେ । ୧୯୨୬ ସାଲରେ ଉଭୟ ଶ୍ରୀମା ଓ ଶ୍ରୀଅରବିନ୍ଦ ସିଦ୍ଧି ପ୍ରାପ୍ତହେଲେ ଏବଂ ଏହି ବର୍ଷହିଁ ଆଶ୍ରମର ମୂଳ ପତ୍ତନ ହେଲା । ଏପର୍ଯ୍ୟନ୍ତ ଆଶ୍ରମରେ ବହୁତ ଅଳ୍ପ ଲୋକ ବାସ କରୁଥିଲେ ଏବଂ ଶିକ୍ଷାକେନ୍ଦ୍ରର କୌଣସି ସୂଚନା ନଥିଲା । ୧୯୩୯ ସାଲରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେଲା । ୧୯୪୩ ସାଲ ଡିସେମ୍ବର ମାସ ଦୁଇ ତାରିଖ ବେଳକୁ କୋଡ଼ିଏ ଜଣ ଛାତ୍ରଛାତ୍ରୀଙ୍କୁ ନେଇ ଶ୍ରୀମା ପ୍ରଥମେ ଆଶ୍ରମ ସ୍କୁଲ ଖୋଲିଥିଲେ । ଏହି ସ୍କୁଲ ଆଶ୍ରମର ସାଧକମାନଙ୍କ ସଙ୍ଗେ ଆସିଥିବା ଛୋଟ ଛୋଟ ଶିଶୁ ବା ବୟସ୍କମାନଙ୍କ ପାଇଁ ସୀମାବଦ୍ଧ ଥିଲା । କିନ୍ତୁ କ୍ରମଶଃ ଏହି ସ୍କୁଲ ବୃଦ୍ଧି ପାଇବାକୁ ଲାଗିଲା ଏବଂ ମାଧ୍ୟମିକ ଶିକ୍ଷା ପରେ ଏକ ବିଶ୍ୱବିଦ୍ୟାଳୟ ସ୍ଥାପନ କରିବାର ଆବଶ୍ୟକତା ଅନୁଭୂତ ହେଲା ।

ଶ୍ରୀଅରବିନ୍ଦଙ୍କ ମହାପ୍ରୟାଣ ଘଟିଲା ୧୯୫୦ ସାଲ ଡିସେମ୍ବର ତା ୫ ରିଖରେ । ଏହି ସମୟରେ ଶ୍ରୀଅରବିନ୍ଦଙ୍କ ଏକ ଅତି ପ୍ରିୟ ଓ

ବହୁବାନ-କଳ୍ପିତ ଆଦର୍ଶକୁ ରୂପ ଦେବାକୁ ଏବଂ ତାଙ୍କର ଯଥାଯଥ ସ୍ମୃତିରକ୍ଷାର୍ଥେ ଶ୍ରୀଅରବିନ୍ଦ ଅନ୍ତର୍ଜାତିକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେବ ବୋଲି ଶ୍ରୀମା ଘୋଷଣା କଲେ । ୧୯୫୧ ସାଲ ଅପ୍ରେଲ ତା୨୪ରିଖରେ ଦେଶ ବିଦେଶର ବହୁ ବିଜ୍ଞ ପଣ୍ଡିତଙ୍କୁ ନେଇ ବିଶ୍ୱବିଦ୍ୟାଳୟ ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହେଲା । (ଏପର୍ଯ୍ୟନ୍ତ ପଣ୍ଡିଚେରୀ ଫରାସୀ ଶାସନାଧୀନ ରହିଥିଲା ଏବଂ ଏହା ଭାରତ ସହିତ ସାମିଲ ହେଲା ୧୯୫୪ ସାଲ ନଭେମ୍ବର ପହିଲା ତାରିଖରେ ।) ଏହି ବିଶିଷ୍ଟ ଉତ୍ସବରେ ଫ୍ରାନ୍‌ସ, ଇଂଲଣ୍ଡ, ଜର୍ମାନୀ, ଆମେରିକା ପ୍ରଭୃତି ପାଶ୍ଚାତ୍ୟ ଦେଶମାନଙ୍କରୁ ଏବଂ ଭାରତର ବିଭିନ୍ନ ପ୍ରାନ୍ତରୁ ପ୍ରତିନିଧିଗଣ ଯୋଗଦାନ କରିଥିଲେ । ଏହି ଉତ୍ସବରେ ସଭାପତିତ୍ୱ କରିଥିଲେ ତତ୍‌କାଳୀନ ବିଶିଷ୍ଟ ଶିକ୍ଷାବିତ୍ ଓ ଜନନାୟକ ସ୍ୱର୍ଗୀୟ ଡକ୍‌ଟର ଶ୍ୟାମପ୍ରସାଦ ମୁଖାର୍ଜି । ଡକ୍‌ଟର ମୁଖାର୍ଜି ଶ୍ରୀଅରବିନ୍ଦ ଆଶ୍ରମକୁ ଭୂୟସୀ ପ୍ରଶଂସା କରି, ଶ୍ରୀଅରବିନ୍ଦଙ୍କ ଲକ୍ଷ୍ୟ, ଆଦର୍ଶ ଓ ସିଦ୍ଧି ସମ୍ବନ୍ଧେ ଏବଂ ଭାରତର ଉତ୍ଥାନ ଓ ଅଭିବୃଦ୍ଧିରେ ଶ୍ରୀଅରବିନ୍ଦଙ୍କ ଦାନ ବିଷୟ ଉଲ୍ଲେଖ କରି ଦୀର୍ଘ ବକ୍ତୃତା ଦେଇଥିଲେ । ସେ ଆଶା ପ୍ରକାଶ କରିଥିଲେ ଯେ ଅଳ୍ପକାଳ ମଧ୍ୟରେ ଶ୍ରୀଅରବିନ୍ଦ ଅନ୍ତର୍ଜାତିକ ବିଶ୍ୱବିଦ୍ୟାଳୟ ବିଭିନ୍ନ ଦେଶର ଦୃଷ୍ଟି ଆକର୍ଷଣ କରିବ ଏବଂ ଭାରତ ସରକାର ଏହାର ବୈଶିଷ୍ଟ୍ୟ ଅବଶ୍ୟ ସ୍ୱୀକାର କରିବେ । କାର୍ଯ୍ୟତଃ ଏହା ଅନେକ ପରିମାଣରେ ଆଜି ସଫଳ ହୋଇଛି ।

୧୯୫୨ ସାଲ ଜାନୁୟାରୀ ତା ୬ ରିଖରେ ମାଧ୍ୟମିକ ଶିକ୍ଷାସ୍ତର ପରେ ଉଚ୍ଚ ବିଶ୍ୱବିଦ୍ୟାଳୟ ଶ୍ରେଣୀମାନ ସ୍ୱୟଂ ଶ୍ରୀମା ଉଦ୍‌ଘାଟନ କଲେ । ଏହି ଉଦ୍‌ଘାଟନ ଉତ୍ସବରେ ଶ୍ରୀମା ଯେଉଁ ବାଣୀ ଘୋଷଣା କରିଥିଲେ ତାହାହିଁ ଛାତ୍ରଛାତ୍ରୀମାନଙ୍କର ଶିକ୍ଷାକେନ୍ଦ୍ରର ଦୈନନ୍ଦିନ

ପ୍ରାର୍ଥନାରୂପରେ (କୌଣସି କୌଣସି ଶ୍ରେଣୀରେ) ପଠିତ ହୁଏ । ଶିକ୍ଷାକେନ୍ଦ୍ରର ନୋଟ୍ ବୁକ୍‌ର ଦ୍ୱିତୀୟ ପୃଷ୍ଠାରେ ଏହି ଘୋଷଣାଟି "Students' Prayer" (ଶିକ୍ଷାର୍ଥୀର ସଂକଳ୍ପ) ନାମରେ ଲିପିବଦ୍ଧ କରାଯାଇଛି :

"Make of us the hero warriors we aspire to become. May we fight successfully the great battle of the future that is to be borne againt the past that seeks to endure; so that the new things may manifest and we be ready to receive them." —The Mother

ଅର୍ଥାତ୍, "ବୀର ଯୋଦ୍ଧା କରି ଗଢ଼ ଆମ୍ଭମାନଙ୍କୁ—ଆମ୍ଭେମାନେ ତାହାହିଁ ହେବାକୁ ଚାହୁଁ । ଅତୀତ ଆହୁରି ବଞ୍ଚି ରହିବାକୁ ଚାହେଁ; ତା ବିରୁଦ୍ଧରେ ଆସନ୍ନ ଭବିଷ୍ୟତର ମହାଯୁଦ୍ଧରେ ଆମ୍ଭେମାନେ ଯେପରି ସଫଳତା ହାସଲ କରିପାରୁ, ଯଦ୍ଦ୍ୱାରା ନୂତନ ବସ୍ତୁଗୁଡ଼ିକ ପ୍ରକାଶିତ ହୋଇପାରେ ଏବଂ ଆମ୍ଭେମାନେ ସେସବୁ ଗ୍ରହଣ କରିବା ନିମିତ୍ତ ପ୍ରସ୍ତୁତ ହୋଇପାରୁ ।"

ପୂର୍ବରୁ ଏକଥା କୁହା ଯାଇଛି ଯେ ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କ ଶିକ୍ଷାର ଆଦର୍ଶ ଓ ପଦ୍ଧତି ପୂର୍ଣ୍ଣାଙ୍ଗ ଶିକ୍ଷା (Integral Education) ନାମରେ ଖ୍ୟାତ । ଏହି ଶିକ୍ଷାର ଲକ୍ଷ୍ୟ ହେଲା ମାନବ ଜୀବନର ପୂର୍ଣ୍ଣାଙ୍ଗ ବିକାଶ । ମନୁଷ୍ୟ ଦେହ-ମନ-ପ୍ରାଣ-ବିଶିଷ୍ଟ ଏକ ଜଟିଳ ସତ୍ତା ଏବଂ ତାହାର ପରିପୂର୍ଣ୍ଣ ବିକାଶର ଅର୍ଥ ହେଲା ତାହା ମଧ୍ୟସ୍ଥ ଭଗବତ ସତ୍ୟ ଓ ଐଶ୍ୱର୍ଯ୍ୟର ବିକାଶ କରି ଦେହ-ପ୍ରାଣ-ମନ ଆଦି ଯନ୍ତ୍ରର ଯଥାର୍ଥ ପୂର୍ଣ୍ଣତା ସାଧନ କରିବା । ଶିକ୍ଷାକେନ୍ଦ୍ରର ଏହି

ଲକ୍ଷ୍ୟର ଏକ ସ୍ପଷ୍ଟ ସୂଚନା ଏଠା ଛାତ୍ରମାନଙ୍କ ନିତ୍ୟ ବ୍ୟବହୃତ ନୋଟ୍ ଖାତା ଉପରେ ଦେଖିବାକୁ ମିଳେ । "The children should be helped to grow up into straight forward, frank, upright and honourable human beings, ready to develop into divine nature." ଅର୍ଥାତ୍ "ଶିଶୁମାନଙ୍କୁ ସରଳ, ନିଷ୍କପଟ ଓ ସତ୍-ଚରିତ୍ରପୂର୍ଣ ବ୍ୟକ୍ତିରୂପେ ଗଢ଼ିବାରେ ସହାୟତା କରିବାକୁ ହେବ, ଯେପରି କି ସେମାନେ ଠିକ୍ ତା'ପରେ ଦିବ୍ୟ-ପ୍ରକୃତିରେ ଗଢ଼ି ଉଠିବାକୁ ପ୍ରସ୍ତୁତ ହୋଇପିବେ ।"

## ଶିକ୍ଷା-କେନ୍ଦ୍ରର ଅନ୍ତର୍ଜାତିକ ସ୍ୱରୂପ :

ଏହି ଶିକ୍ଷା-କେନ୍ଦ୍ର ଏକ ଅନ୍ତର୍ଜାତିକ ବା ଅନ୍ତଃରାଷ୍ଟ୍ରୀୟ ଅନୁଷ୍ଠାନ । ଏଠାରେ କେବଳ ଯେ ପୃଥିବୀର ବିଭିନ୍ନ ଦେଶର ଛାତ୍ରଛାତ୍ରୀ ଅଧ୍ୟୟନ କରନ୍ତି ବା ବାସ କରନ୍ତି ତାହା ନୁହେଁ, ବରଂ ପ୍ରତ୍ୟେକ ଦେଶର ବାସିନ୍ଦାମାନଙ୍କୁ ସେମାନଙ୍କର ସଂସ୍କୃତି, ପ୍ରତିଭା ଓ ପରମ୍ପରା ରକ୍ଷା କରିବାକୁ ଯଥାର୍ଥ ସୁଯୋଗ ଦିଆଯାଏ । ସାମୟିକରୂପେ ବିଭିନ୍ନ ଦେଶର ସାଂସ୍କୃତିକ ଉତ୍ସବମାନ ପ୍ରତିଷ୍ଠିତ ହୋଇ ସେହି ଦେଶର କଳା, ବିଜ୍ଞାନ, ଶିଳ୍ପ, ଦର୍ଶନ ଓ ସଂସ୍କୃତି ସମ୍ବନ୍ଧରେ ବକ୍ତୃତା ହୁଏ । ଶ୍ରୀଅରବିନ୍ଦ ମାନବ ଜାତିର ଯେଉଁ ବୃହତ୍ତର ଐକ୍ୟର ଆଦର୍ଶ ପ୍ରଚାର କରିଛନ୍ତି ବିଶ୍ୱବିଦ୍ୟାଳୟ ତାହାକୁହିଁ ରୂପ ଦେବାକୁ ଚେଷ୍ଟା କରୁଛି । ଏଠାରେ ଏକ ଉଲ୍ଲେଖଯୋଗ୍ୟ ଘଟଣା ଏହି ଯେ ଭାରତର ବିଭିନ୍ନ ଦେଶରୁ ତଥା ପୃଥିବୀର ୧୪ଟି ବିଭିନ୍ନ ଦେଶରୁ, ଇଂଲଣ୍ଡ, ଜର୍ମାନୀ, ଫ୍ରାନ୍ସ, ସୁଇଜରଲଣ୍ଡ, ଅଷ୍ଟ୍ରିୟା, ପୋଲଣ୍ଡ, ଆମେରିକା, କାନାଡ଼ା, ଚୀନ, ଜାପାନ, ତିବ୍ବତ, ନେପାଳ, ଅଷ୍ଟ୍ରେଲିୟା

ଓ ସିହଳ ଆଦି ଦେଶରୁ ଛାତ୍ରଛାତ୍ରୀମାନେ ଥିଲେ ସୁଦ୍ଧା ପରସ୍ପର ମଧ୍ୟରେ କୌଣସି ଭିନ୍ନତା ବା ବିଭେଦ ଦେଖାଯାଏ ନାହିଁ । ଅନ୍ତର୍ଜାତିକତାର ଯେଉଁ ଯଥାର୍ଥ ମନସ୍ତାତ୍ତ୍ୱିକ ଭିତ୍ତି ଆବଶ୍ୟକ ତାହା ବାସ୍ତବରେ ଏହି ଶିକ୍ଷା-କେନ୍ଦ୍ରରେ ଜୀବନ୍ତରୂପେ ଦେଖାଯାଏ । ଭାରତର ଜାତୀୟ ସଂହତି ରକ୍ଷା କରିବାପାଇଁ ଆମ ସରକାର ଆଜି ବିଶେଷ ଚେଷ୍ଟିତ କିନ୍ତୁ ଯଥାର୍ଥରେ ଏହି ସଂହତି ସାଧିତ ହୋଇ-ପାରିବ ଯଦି ଶିକ୍ଷାର ଏହି ମହତ ଲକ୍ଷ୍ୟ ଓ ଆଦର୍ଶ ଗ୍ରହଣ କରାଯାଏ । ସମନ୍ୱୟ, ଐକ୍ୟ, ସଂହତିର ମୂଳଭିତ୍ତି ଆଧ୍ୟାତ୍ମିକତା—ଅନ୍ୟ କିଛି ନୁହେଁ ।

## ଶିକ୍ଷା-କେନ୍ଦ୍ରର ବାହ୍ୟରୂପ ଓ ସଂଗଠନ :

ଏଠାରେ ସଂକ୍ଷେପରେ ଶିକ୍ଷା-କେନ୍ଦ୍ରର ସଂଗଠନ ବିଷୟରେ ଆଲୋଚନା କରିବା । କିନ୍ତୁ ଏହି ବିଷୟରେ ଆଲୋଚନା କରିବା ପୂର୍ବରୁ ଏଠାରେ ଛାତ୍ରମାନଙ୍କୁ କିପରି ଭାବେ ଗ୍ରହଣ କରାଯାଏ ଏବଂ ସ୍କୁଲରେ କେବେ ଯୋଗଦେବାକୁ ସୁଯୋଗ ମିଳେ ସେ ବିଷୟରେ ସ୍ପଷ୍ଟରୂପେ କହିବା ଆବଶ୍ୟକ ।

### (କ) ଶିକ୍ଷା-କେନ୍ଦ୍ରରେ ଛାତ୍ର ଗ୍ରହଣ :

ଶିକ୍ଷା-କେନ୍ଦ୍ରରେ ସାଧାରଣତଃ ଅଳ୍ପ ବୟସର ଛାତ୍ରଛାତ୍ରୀମାନଙ୍କୁ ଗ୍ରହଣ କରାଯାଏ । ଯେଉଁ ଛାତ୍ରମାନେ ଶିକ୍ଷା-କେନ୍ଦ୍ରରେ ଯୋଗ ଦେବାକୁ ଚାହାନ୍ତି ସେମାନେ ନିମ୍ନଲିଖିତ ନିୟମାବଳୀ ପ୍ରତି ଦୃଷ୍ଟି ଦେବେ ।

୧. ଯେଉଁ ଛାତ୍ର ଶିକ୍ଷା-କେନ୍ଦ୍ରରେ ଯୋଗ ଦେବାକୁ ଚାହିଁବେ ସେ କିମ୍ବା ତାଙ୍କର ଅଭିଭାବକ ନିର୍ଦ୍ଦିଷ୍ଟ ଦରଖାସ୍ତ ଫର୍ମରେ ସମସ୍ତ ବିଷୟ ପୂରଣ କରି ନିମ୍ନ ଠିକଣାରେ ଛାତ୍ରର ଫଟୋସହିତ ପଠାଇବାକୁ ହେବ :

The Mother,
Sri Aurobindo Ashram
Pondicherry-2

ଦରଖାସ୍ତ ଫର୍ମ ଏହି ଠିକଣାରେ ମିଳିବ :—The Registrar, Sri Aurobindo International Centre of Education, Pondicherry-2

୨. ପ୍ରତ୍ୟେକ ଦରଖାସ୍ତର ବିଚାର ମା' ସ୍ୱୟଂ କରନ୍ତି ଏବଂ ତାଙ୍କ ବିଚାରହିଁ ଶେଷ ସିଦ୍ଧାନ୍ତ ।

୩. କୌଣସି ଛାତ୍ରକୁ ସ୍କୁଲ ଦରମା ଦେବାକୁ ହୁଏ ନାହିଁ—କିନ୍ତୁ ହଷ୍ଟେଲରେ ରହିବା ନିମିତ୍ତ ମାସିକ ଟ ୧୦୦୧ ଙ୍କା ଦେବାକୁ ହୁଏ । ଏହାଛଡ଼ା ନିଜର ପୋଷାକପତ୍ରର ଖର୍ଚ୍ଚ ସ୍ୱତନ୍ତ୍ର । ଛାତ୍ରମାନଙ୍କୁ ସ୍କୁଲ ତରଫରୁ ଖାତା, ପେନସିଲ, ପାଠ୍ୟପୁସ୍ତକ ଓ ଅନ୍ୟାନ୍ୟ ଆବଶ୍ୟକୀୟ ବସ୍ତୁ ଯୋଗାଇ ଦିଆଯାଏ । ବିଜ୍ଞାନାଗାରରେ ମଧ୍ୟ ଅଧିକ ଟଙ୍କା ଦେବାକୁ ପଡ଼େ ନାହିଁ । କୌଣସି ପ୍ରକାର ବିଶେଷ ଖେଳ, ସଙ୍ଗୀତ-ଚର୍ଚ୍ଚା ବା ନୃତ୍ୟଚର୍ଚ୍ଚା ନିମିତ୍ତ ଅଧିକ ଫିସ୍ ମଧ୍ୟ ଦେବାକୁ ପଡ଼େ ନାହିଁ ।

୪. ଶିକ୍ଷା-କେନ୍ଦ୍ରର ବର୍ଷାରମ୍ଭ ହୁଏ ତା ୧୬ ଡିସେମ୍ବର, ଏବଂ ପ୍ରତ୍ୟେକ ବର୍ଷ ନଭେମ୍ବର ପ୍ରଥମ ସପ୍ତାହ ଶେଷବେଳକୁ ମାସକ ନିମିତ୍ତ ଶିକ୍ଷା-କେନ୍ଦ୍ର ବନ୍ଦ ରହେ । ଏହାଛଡ଼ା ଏଠାରେ ଦୀର୍ଘ

ଅବକାଶ—ଯେପରି ଗ୍ରୀଷ୍ମାବକାଶ ବା ପୂଜାଛୁଟି ବା ଦୋଳଛୁଟି ଏବଂ ଅନ୍ୟ କିଛି ପ୍ରକାରର ଛୁଟି ନାହିଁ । ଶିକ୍ଷା-କେନ୍ଦ୍ରରେ ଯୋଗଦାନ କରିବାକୁ ଇଚ୍ଛୁକ ଛାତ୍ର ତା ୩୦ ରିଖ ନଭେମ୍ବର ପୂର୍ବରୁ ଦରଖାସ୍ତ ପଠାଇବେ ।

୫. ବିଭିନ୍ନ ପ୍ରକାରର ୯ଟି ବୋର୍ଡିଂ ଅଛି । ପ୍ରତ୍ୟେକ ବୋର୍ଡିଂରେ ୮।୧୦ ଜଣ ଛାତ୍ରରୁ ବେଶୀ ନ ଥା'ନ୍ତି ଏବଂ ସେଥିପାଇଁ ଜଣେ ସୁପରିଣ୍ଟେଣ୍ଡେଣ୍ଟ ଥା'ନ୍ତି । ଅନେକ ସମୟରେ ହଷ୍ଟେଲରେ ସ୍ଥାନାଭାବରୁ ଛାତ୍ରମାନଙ୍କୁ ଶିକ୍ଷା-କେନ୍ଦ୍ରରେ ଯୋଗ ଦେବାକୁ ମନା କରି ଦିଆଯାଏ ।

୬. ଯେଉଁ ଛାତ୍ରମାନେ ଠିକ୍ ଡିସେମ୍ବର ତା ୧୬ ଖରି ଦିନ ସ୍କୁଲରେ ଯୋଗଦାନ କରିପାରିବେ ନାହିଁ, ସେମାନଙ୍କୁ ବର୍ଷ ମଧ୍ୟରେ ପୁଣି ଗ୍ରହଣ କରାଯାଏ ନାହିଁ । ଅର୍ଥାତ୍ ସ୍କୁଲ ଖୋଲିଲା ଦିନ ଛାତ୍ର-ମାନେ ଅବଶ୍ୟ ଉପସ୍ଥିତ ରହିବେ ।

୭. ଛାତ୍ର ଶିକ୍ଷା-କେନ୍ଦ୍ରରେ ଯୋଗଦାନ କଲାପରେ ତାକୁ ପରୀକ୍ଷା କରି ଯେଉଁ ଶ୍ରେଣୀର ଉପଯୁକ୍ତ ବିବେଚିତ ହେବ ସେହି ଶ୍ରେଣୀରେ ନେବାକୁ ହୁଏ ।

୮. ଛାତ୍ରମାନଙ୍କୁ ବର୍ଷସାରା ଶିକ୍ଷା-କେନ୍ଦ୍ରରେ ରହିବାକୁ ପଡ଼େ । ଛାତ୍ରର ଦୈନନ୍ଦିନ କାର୍ଯ୍ୟକ୍ରମ ଉପରେ ବେଶୀ ଜୋର୍ ଦିଆଯାଏ ଏବଂ କିଛିଦିନ ପାଇଁ ଶିକ୍ଷା-କେନ୍ଦ୍ରରେ ଛାତ୍ରର ଅନୁପସ୍ଥିତିକୁ ନାପସନ୍ଦ କରାଯାଏ । ବର୍ଷ ଶେଷରେ ଏକମାସ ଛୁଟିରେ ମଧ୍ୟ ପିଲାମାନଙ୍କୁ ଛାଡ଼ିଦେବାକୁ ମା' ସହଜରେ ସ୍ୱୀକାର କରନ୍ତି ନାହିଁ ।

ବିଶ୍ୱବିଦ୍ୟାଳୟ ସ୍ତରରେ କିପରି ଛାତ୍ର ନିଆଯାଏ, ଏ ବିଷୟରେ ପରେ କୁହାଯିବ ।

## ଶିକ୍ଷା-କେନ୍ଦ୍ରର ଚାରୋଟି ବିଭାଗ :

| ଶ୍ରେଣୀର ନାମ | ପାଠ୍ୟ ସମୟ | ସାଙ୍କେତିକ ଚିହ୍ନ | ଛାତ୍ର ସଂଖ୍ୟା (୧୯୬୩) |
|---|---|---|---|
| ୧. ଶିଶୁ ଶିକ୍ଷା (କିଣ୍ଡରଗାର୍ଟନ) | ଦୁଇବର୍ଷ | K1, K2 | ୨୫ |
| ୨. ନିମ୍ନ ଓ ଉଚ୍ଚପ୍ରାଥମିକ (ପ୍ରାଇମେରୀ) | ଚାରିବର୍ଷ | P1, P2, P3, P4 | ୧୫୦ |
| ୩. ମାଧ୍ୟମିକ (ସେକେଣ୍ଡାରୀ) | ଚାରିବର୍ଷ | S5, S6, S7, S8 | ୭୦ |
| ୪. ଉଚ୍ଚମାଧ୍ୟମିକ (ହାଇୟର ସେକେଣ୍ଡାରୀ) | ଦୁଇବର୍ଷ | S9, S10 | ୩୫ |
| ୫. ବିଶ୍ୱବିଦ୍ୟାଳୟ (ହାୟର କୋର୍ସ) | ତିନବର୍ଷ | HC1, HC2, HC3 | ୩୦ |

### ( କିଣ୍ଡରଗାର୍ଟନ )

ଶିଶୁ ଚାରିବର୍ଷ ବୟସରେ ଏହି ଶିଶୁ-ଶିକ୍ଷା ଶ୍ରେଣୀରେ ଯୋଗଦାନ କରିପାରେ । ମାତ୍ର ଏଥିପାଇଁ ଶିଶୁକୁ ଆଶ୍ରମରେ ନିଜର ଆତ୍ମୀୟ ସ୍ୱଜନଙ୍କ ସଙ୍ଗେ ରହିବାକୁ ପଡ଼େ । ବୋର୍ଡିଂରେ କୌଣସି ଛାତ୍ରକୁ ସାତବର୍ଷ ନ ହେଲେ ରଖାଯାଏ ନାହିଁ । ଏହି ଶିଶୁ ଶ୍ରେଣୀରେ ନାନା ପ୍ରକାର ଖେଳ, କୌତୁକ ଓ ଚିତ୍ତରଞ୍ଜକ ଉପାୟରେ ଶିକ୍ଷା ଦିଆଯାଏ । ଏହି ଶିକ୍ଷା ଦେବାପାଇଁ ବିଶେଷ ଟ୍ରେନିଂ ପ୍ରାପ୍ତ ଶିକ୍ଷୟିତ୍ରୀ ବା ଆଶ୍ରମ ସାଧିକାମାନେ ଅଛନ୍ତି । ଏହି ଶ୍ରେଣୀମାନଙ୍କରେ ସାଧାରଣତଃ ଫ୍ରେଞ୍ଚଭାଷା ଓ କିଛିଟା ଗଣିତ ଶିକ୍ଷା ଦିଆଯାଏ । ଶିଶୁମାନଙ୍କୁ କୌଣସି ସ୍ତରରେ ବାଧ୍ୟବାଧକତା କରି ପଢ଼ାଯାଏ ନାହିଁ । ବର୍ତ୍ତମାନ ଏହି ସ୍ତରରେ ଉଭୟ K1, K2 ୨୫ ଜଣ ଛାତ୍ରଛାତ୍ରୀ ପଢ଼ୁଛନ୍ତି ।

# ପ୍ରାଇମେରୀ :

ଶିଶୁ ଛଅ କିମ୍ବା ସାତ ବର୍ଷ ବୟସରେ ପ୍ରାଇମେରୀ ଶ୍ରେଣୀରେ ଯୋଗଦାନ କରେ । ଏଥିରେ ନିମ୍ନଲିଖିତ ବିଷୟଗୁଡ଼ିକ ନିମ୍ନଲିଖିତ ବ୍ୟବସ୍ଥାନୁସାରେ ପଢ଼ାଯାଏ ।

| ବିଷୟ | ସାପ୍ତାହିକ ପିରିୟଡ଼ ସଂଖ୍ୟା | ସର୍ବମୋଟ ବା: ପି: ସଂଖ୍ୟା (ପ୍ର: ପି: ୪୦ ମି) |
|---|---|---|
| ଇଂରେଜୀ | ୬ | ୨୪୦ |
| ଫ୍ରେଞ୍ଚ | ୬ | ୨୪୦ |
| ଗଣିତ | ୪ | ୧୬୦ |
| ସାଧାରଣ ବିଜ୍ଞାନ | ୪ | ୧୬୦ |
| ଆଧୁନିକ ଭାରତୀୟ ଭାଷା | ୪ | ୧୬୦ |
| ଇତିହାସ ଭୂଗୋଳ | ୪ | ୧୬୦ |
| ଚିତ୍ରାଙ୍କନ (ଡ୍ରଇଂ) | ୧ | ୪୦ |
| ହସ୍ତଶିଳ୍ପ | ୧ | ୪୦ |

ଇଂରେଜୀ ଭାଷା ଇଂରେଜୀ ଓ ଫ୍ରେଞ୍ଚ ଭାଷା ଫ୍ରେଞ୍ଚ ମାଧ୍ୟମରେ ପଢ଼ାଯାଏ । ଏହାଛଡ଼ା ଏହି ଶ୍ରେଣୀରେ ଗଣିତ ଓ ସାଧାରଣ ବିଜ୍ଞାନ ବରାବର ଫ୍ରେଞ୍ଚ ଭାଷାରେ ପଢ଼ାଯାଏ । ଇତିହାସ, ଭୂଗୋଳ ଫ୍ରେଞ୍ଚ ବା ଇଂରେଜୀ ମାଧ୍ୟମରେ ପଢ଼ାଯାଏ । ଶିକ୍ଷା-କେନ୍ଦ୍ରର ଆନ୍ତର୍ଜାତିକ ସ୍ୱରୂପ ରକ୍ଷା କରିବା ନିମିତ୍ତ ଇଂରେଜୀ ଓ ଫ୍ରେଞ୍ଚ ଉପରେ ବିଶେଷ ଜୋର ଦିଆଯାଏ । ଏହାଛଡ଼ା ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କ ସମସ୍ତ ରଚନାବଳୀ ଇଂରେଜୀ ବା ଫ୍ରେଞ୍ଚ ବା ଉଭୟ ଭାଷାରେ ଲିଖିତ ହୋଇଥିବାରୁ ଏହି ଭାଷାଦ୍ୱୟକୁ ବିଶେଷ ପ୍ରାଧାନ୍ୟ ଦିଆଯାଏ । ବିଶେଷତଃ ଫ୍ରେଞ୍ଚ ଭାଷାରେ ଶିଶୁର ବିଦ୍ୟାରମ୍ଭ ହୁଏ । କାହିଁକି ଫ୍ରେଞ୍ଚ ଭାଷା ଉପରେ ଶିକ୍ଷା-କେନ୍ଦ୍ରରେ ଜୋର ଦିଆ ହୋଇଛି ସେ ସମ୍ବନ୍ଧରେ ଶ୍ରୀମା'ଙ୍କର ନିମ୍ନଲିଖିତ ଘୋଷଣାଟି ପ୍ରଣିଧାନଯୋଗ୍ୟ :—

"The Mother has given some of the reasons why a special place is given to French in our Centre of Education.

From a general point of view, French represents a culture, an outlook on life and the world that have a universal value very different from those represented by English, and this should be preserved in an institution that wishes to be international.

In a more particular way, The Mother said that when She speaks to children, She spontaneously addresses them in French. When they do not understand She turns to English, but the relation is different. Moreover, She writes in French, and Her books in English are only translations. She added, "When I will have something to say I shall say it in French; if I resume my classes, I shall do it in French, and those who do not understand will loose their time."

The Mother finally said that there are occult and spiritual reasons why She wishes French to be kept in a special position."

## ମାଧ୍ୟମିକ ଓ ଉଚ୍ଚମାଧ୍ୟମିକ ଶ୍ରେଣୀ (S5—S10) :

ଏହି ସମୟରେ ଛାତ୍ରର ବୟସ ଦଶ କିମ୍ବା ଏଗାର ବର୍ଷ । ଏହି ଶ୍ରେଣୀ ଗୁଡ଼ିକରେ ନିମ୍ନଲିଖିତ ବ୍ୟବସ୍ଥାନୁସାରେ ଶିକ୍ଷା ଦିଆଯାଏ । ଆବଶ୍ୟକମତେ ପରିବର୍ତ୍ତନ ମଧ୍ୟ କରାଯାଏ ।

| ବିଷୟ | ସାପ୍ତାହିକ ପିରିୟଡ଼ ସଂଖ୍ୟା | ମୋଟ ବାର୍ଷିକ ପିରିୟଡ଼ ସଂଖ୍ୟା |
|---|---|---|
| ୧. ଇଂରେଜୀ | ୬ | ୨୪୦ |
| ୨. ଫ୍ରେଞ୍ଚ | ୬ | ୨୪୦ |
| ୩. ଗଣିତ | ୪ | ୧୬୦ |
| ୪. ବିଜ୍ଞାନ (ବିଜ୍ଞାନ ଓ ଜୀବନ) S5, S6, | ୪ | ୧୬୦ |
| ଫିଜିକସ୍, କେମିଷ୍ଟ୍ରି, ଜୀବନ ଆପ୍ଲାଇଡ଼୍ ସାଇନ୍ସ (S7) | ୫ | ୨୦୦ |
| ଫିଜିକସ୍, କେମିଷ୍ଟ୍ରି, ଫିଜିଓଲଜି (S8) | ୫ | ୨୦୦ |
| ଫିଜିକସ୍, କେମିଷ୍ଟ୍ରି (S9, 10) | ୪ | ୧୬୦ |
| ପ୍ରାକ୍ଟିକାଲ | ୩ | ୧୨୦ |
| ୫. ଯେକୌଣସି ଗୋଟିଏ ଭାରତୀୟ ଭାଷା (ମାତୃଭାଷା) | ୩।୪ | ୧୨୦।୧୬୦ |
| ୬. ଇତିହାସ ଓ ଭୂଗୋଳ | ୩।୪ | ୧୨୦।୧୬୦ |
| ୭. ଡ୍ରଇଂ | ୧ | ୪୦ |
| ୮. ଟେକ୍‌ନିକାଲ କୋର୍ସ (S7,8) | ୪ | ୧୬୦ |
| ୯. ଅଧିକ ଗୋଟିଏ ଭାରତୀୟ ଭାଷା (ହିନ୍ଦୀ ବା ସଂସ୍କୃତ) | ୨ | ୮୦ |

ଏହିସବୁ ବିଷୟଗୁଡ଼ିକର ବିଶେଷ ବିବରଣୀ ଶିକ୍ଷା-କେନ୍ଦ୍ରର ୧୯୬୦ ସାଲରେ ପ୍ରକାଶିତ ହାଣ୍ଡ୍-ବୁକ୍‌ରୁ ମିଳି ପାରିବ ।

## ବିଶ୍ୱବିଦ୍ୟାଳୟ ଶିକ୍ଷା (ହାୟର କୋର୍ସ):

ଏଠାରେ ବିଶ୍ୱବିଦ୍ୟାଳୟ ସ୍ତରର ଉଚ୍ଚଶିକ୍ଷା ବା ଡିଗ୍ରି କୋର୍ସ ତିନି ବର୍ଷ । ବର୍ତ୍ତମାନ ଏହି ଡିଗ୍ରି କୋର୍ସ ଭାରତ ସରକାରଙ୍କଦ୍ୱାରା ସ୍ୱୀକୃତି ଲାଭ କରିଛି । ଏହା ଯଥାସ୍ଥାନରେ କୁହାଯିବ । ତିନି ବର୍ଷ ଡିଗ୍ରି କୋର୍ସ ପରେ ଦୁଇ ବର୍ଷ

ସ୍ନାତକୋତ୍ତର ଶିକ୍ଷାର ବ୍ୟବସ୍ଥା ରହିଛି । ଛାତ୍ର ଏହି ଉଚ୍ଚଶିକ୍ଷା ସ୍ତରରେ କଳା (Art) ବା ବିଜ୍ଞାନ (Science) ଗ୍ରହଣ କରିପାରେ । ନିମ୍ନଲିଖିତ ବିଷୟଗୁଡ଼ିକ ଏଠାରେ ନିମ୍ନଲିଖିତ ମତେ କଳା ଓ ବିଜ୍ଞାନ ଶ୍ରେଣୀରେ ତିନି ବର୍ଷ ମଧ୍ୟରେ ପଢ଼ାଯାଏ । ବିଶେଷ ବିବରଣୀ ଓ ପାଠ୍ୟ-ତାଲିକା (Syllabus) ନିମିତ୍ତ ଶିକ୍ଷା-କେନ୍ଦ୍ରର ହାଣ୍ଡ୍ ବୁକ୍ (୧୯୬୦ ସାଲ) ଦେଖିବାକୁ ହେବ ।

## ହାୟର କୋର୍ସ (ଉଚ୍ଚଶିକ୍ଷା)

### ( କଳା—ତିନି ବର୍ଷ )

ଏଠାରେ ଦୁଇଟି ବିଭିନ୍ନ ଗ୍ରୁପ୍‌ର ବିଷୟ ରହିଛି—କେତେକ ବାଧ୍ୟତାମୂଳକ ବିଷୟ ଓ କେତେକ ଇଚ୍ଛାଧୀନ ବିଷୟ ।

(କ) ବାଧ୍ୟତାମୂଳକ ବିଷୟ (Compulsory) :

୧. ଶ୍ରୀଅରବିନ୍ଦ ଓ ତତ୍‌ସମ୍ପର୍କୀୟ ଅନ୍ୟାନ୍ୟ ବିଷୟର ଅଧ୍ୟୟନ (Studies in Sri Aurobindo & related subjects)

୨. ବିଭିନ୍ନ ଭାଷା (Languages)

୩. ସାଧାରଣ ବିଜ୍ଞାନ (General Science)

(ଖ) ଇଚ୍ଛାଧୀନ ବିଷୟ (Optional) :

ବାଧ୍ୟତାମୂଳକ ବିଷୟଗୁଡ଼ିକୁ ତିନିବର୍ଷ ପର୍ଯ୍ୟନ୍ତ ପଢ଼ିବାକୁ ହୁଏ । ଏହାଛଡ଼ା ପ୍ରତ୍ୟେକ କଳା-ବିଭାଗ ଛାତ୍ରକୁ ଦ୍ୱିତୀୟ ଓ ତୃତୀୟ ବର୍ଷରେ ଇଚ୍ଛାଧୀନ ବିଷୟ ମଧ୍ୟରୁ କେତେକ ବିଷୟ ନେବାକୁ ହେବ ଯାହାର ସାପ୍ତାହିକ ପିରିୟଡ଼ ସଂଖ୍ୟା ସର୍ବନିମ୍ନ ଅଠର ଏବଂ ସର୍ବୋଚ୍ଚ ବାଇଶି ହେବ ।

(କ) ବାଧ୍ୟତାମୂଳକ ବିଷୟ :—

| ଶ୍ରୀଅରବିନ୍ଦ ଓ ତତ୍‌ସମ୍ପର୍କୀୟ ଅନ୍ୟାନ୍ୟ ବିଷୟର ଅଧ୍ୟୟନ : | ତିନିବର୍ଷର ସର୍ବମୋଟ ପିରିୟଡ଼୍ ସଂଖ୍ୟା (ପ୍ର: ପି: ୫୦ ମି) |
|---|---|
| ୧. ବିଶ୍ୱ ଇତିହାସର ଭୂମିକା, ପ୍ରାଥମିକ ରାଜନୀତି-ବିଜ୍ଞାନ ,ପ୍ରାଥମିକ ଅର୍ଥନୀତି ଏବଂ ଶ୍ରୀଅରବିନ୍ଦଙ୍କ 'ମାନବ ସମାଜର ଐକ୍ୟ' (Th eIdeal of Human Unity)ଗ୍ରନ୍ଥ | ୧୨୦ |
| ୨. ପ୍ରାଥମିକ ସମାଜ-ବିଜ୍ଞାନ, ସମାଜ-ଦର୍ଶନ, ଏବଂ ଶ୍ରୀଅରବିନ୍ଦଙ୍କ 'ସମାଜ-ଦର୍ଶନ' (The Human Cycle) ଗ୍ରନ୍ଥ | ୧୦୦ |
| ୩. ବିଭିନ୍ନ ଧର୍ମର ଇତିହାସ ଓ ଉତ୍ପତ୍ତି | ୪୦ |
| ୪. ଭାରତୀୟ ସଂସ୍କୃତିର ଆଧାର (The Foundations of Indian Culture) | ୬୦ |
| ୫. ଭାରତୀୟ ଦର୍ଶନ, ପାଶ୍ଚାତ୍ୟ-ଦର୍ଶନ, ତର୍କଶାସ୍ତ୍ର ଓ ନୀତିଶାସ୍ତ୍ର | ୧୨୦ |
| ୬. ପୂର୍ଣ୍ଣାଙ୍ଗ ଦର୍ଶନ (Integral philosophy), 'ଦିବ୍ୟ-ଜୀବନ'(The Life Divine) ଗ୍ରନ୍ଥର କେତେକ ବିଶେଷ ଅଧ୍ୟାୟ | ୮୦ |
| ୭. ଆଧୁନିକ ମନସ୍ତତ୍ତ୍ୱ, ପୂର୍ଣ୍ଣାଙ୍ଗ ମନସ୍ତତ୍ତ୍ୱ ଶ୍ରୀଅରବିନ୍ଦଙ୍କ 'ଯୋଗ-ସମନ୍ୱୟ' (The Synthesis of Yoga)ର କେତେକ ବିଶେଷ ଅଧ୍ୟାୟ | ୮୦ |

ବିଭିନ୍ନ ଭାଷା (Languages) :—

| | | |
|---|---|---|
| ୧. | ଇଂରେଜୀ | ୨୪୦ |
| ୨. | ଫ୍ରେଞ୍ଚ | ୩୨୦ |
| ୩. | ଯେକୌଣସି ଗୋଟିଏ ଆଧୁନିକ ଭାରତୀୟ ଭାଷା ବା ସଂସ୍କୃତ | ୨୪୦ |

ସାଧାରଣ ବିଜ୍ଞାନ (General Science) :—

| | | |
|---|---|---|
| ୧. | ଜୀବ-ବିଜ୍ଞାନ | ୨୪୦ |
| ୨. | ଫିଜିକସ୍, କେମିଷ୍ଟ୍ରି, ଗଣିତ, ଗ୍ରହ-ବିଜ୍ଞାନ ସମ୍ବନ୍ଧୀୟ ସାଧାରଣ ଜ୍ଞାନ | ୨୪୦ |

(ଖ) ଇଚ୍ଛାଧୀନ ବିଷୟ (Optional) :—

| | | |
|---|---|---|
| ୧. | ଇଂରେଜୀ ସାହିତ୍ୟ | ୩୨୦ |
| ୨. | ଫ୍ରେଞ୍ଚ ସାହିତ୍ୟ | ୩୨୦ |
| ୩. | ହିନ୍ଦୀ ସାହିତ୍ୟ | ୩୨୦ |
| ୪. | ବଙ୍ଗଳା ସାହିତ୍ୟ | ୩୨୦ |
| ୫. | ଗୁଜରାଟୀ ସାହିତ୍ୟ | ୨୪୦ |
| ୬. | ସଂସ୍କୃତ ସାହିତ୍ୟ | ୨୪୦ |
| ୭. | ଜର୍ମାନ ଭାଷା ଓ ସାହିତ୍ୟ | ୧୬୦ |
| ୮. | ବିଶ୍ୱ ଇତିହାସ ଓ ସଭ୍ୟତା | ୨୪୦ |
| ୯. | ସମାଜ-ବିଜ୍ଞାନ ଓ ଦର୍ଶନ | ୨୪୦ |
| ୧୦. | ରାଜନୀତି-ବିଜ୍ଞାନ ଓ ଦର୍ଶନ | ୩୨୦ |

୧୧. ଅର୍ଥନୀତି — ୩୨୦

୧୨. ଦର୍ଶନ-ଶାସ୍ତ୍ର

(a) ଭାରତୀୟ — ୮୦

(b) ପାଶ୍ଚାତ୍ୟ — ୮୦

(c) ପୂର୍ଣ୍ଣାଙ୍ଗ — ୧୬୦

୧୩. ପୂର୍ଣ୍ଣାଙ୍ଗ ମନସ୍ତତ୍ତ୍ୱ — ୧୨୦

୧୪. ମନସ୍ତତ୍ତ୍ୱ (ଶିକ୍ଷା ଓ ସ୍କୁଲ ସମ୍ବନ୍ଧୀୟ) — ୮୦

୧୫. ଶିଳ୍ପ-ସଂଗଠନ ଏବଂ ବାଣିଜ୍ୟ ପରିଚାଳନା (Industrial Organisation & Management) — ୮୦

୧୬. ବ୍ୟବସାୟ ସଂଗଠନ ଓ ପରିଚାଳନା (Business Organisation & Management) — ୮୦

## ହାୟର କୋର୍ସ (ଉଚ୍ଚଶିକ୍ଷା)

ବିଜ୍ଞାନ—ତିନି ବର୍ଷ

ନୋଟ୍ :—ଏଠାରେ ଦୁଇଟି ବିଭିନ୍ନ ଗ୍ରୁପ୍‌ର ପାଠ୍ୟ-ବିଷୟ ରହିଛି । ବିଜ୍ଞାନ ବିଭାଗରେ ଇଚ୍ଛାଧୀନ (Optional) ବିଷୟ ନାହିଁ ।

କ :— ବାଧ୍ୟତାମୂଳକ (Compulsory)

I. ଶ୍ରୀଅରବିନ୍ଦ ଓ ତତ୍‌ସମ୍ପର୍କୀୟ ଅନ୍ୟାନ୍ୟ ବିଷୟର ଅଧ୍ୟୟନ

II. ବିଭିନ୍ନ ଭାଷା

III. ବିଭିନ୍ନ ବିଜ୍ଞାନ

ଖ :— ଅଧିକା ବିଷୟ (Additional Subjects)

କୌଣସି ଗ୍ରୁପ ତିନି ବର୍ଷ ଡିଗ୍ରି କୋର୍ସର ବିଜ୍ଞାନ ଗ୍ରୁପ ହିସାବରେ ସମସ୍ତ ବାଧ୍ୟତାମୂଳକ ବିଷୟ ଅଧ୍ୟୟନ କରିବ ଏବଂ ଶେଷ ଦୁଇ ବର୍ଷ ଅର୍ଥାତ୍

ଦ୍ୱିତୀୟ ଓ ତୃତୀୟ ବର୍ଷରେ ଅଧିକା-ପାଠ୍ୟ ବିଷୟ ପଢ଼ିବାକୁ ଇଚ୍ଛା କଲେ ପଢ଼ିପାରେ ।

| କ :—ବାଧ୍ୟତାମୂଳକ ବିଷୟ (କଳା ବିଭାଗ ସଙ୍ଗେ ସମାନ) | ତିନି ବର୍ଷରେ ସର୍ବମୋଟ ପିରିୟଡ଼ ସଂଖ୍ୟା |
|---|---|
| **I. ଶ୍ରୀଅରବିନ୍ଦ ଓ ତତ୍‌ସମ୍ପର୍କୀୟ ଅନ୍ୟାନ୍ୟ ବିଷୟର ଅଧ୍ୟୟନ :** | |
| ୧. ପୃଥିବୀ ଇତିହାସର ଭୂମିକା, ପ୍ରାଥମିକ ରାଜନୀତି-ବିଜ୍ଞାନ, ପ୍ରାଥମିକ ଅର୍ଥନୀତି ଏବଂ ଶ୍ରୀଅରବିନ୍ଦଙ୍କ "ମାନବ-ସମାଜର ଐକ୍ୟ" (The Ideal of Human Unity) | ୧୨୦ |
| ୨. ପ୍ରାଥମିକ ସମାଜ-ବିଜ୍ଞାନ, ଶ୍ରୀଅରବିନ୍ଦଙ୍କ ସମାଜ-ଦର୍ଶନ (The Human Cycle) | ୧୦୦ |
| ୩. ବିଭିନ୍ନ ଧର୍ମର ଇତିହାସ ଓ ଉତ୍ପତ୍ତି | ୪୦ |
| ୪. ଭାରତୀୟ ସଂସ୍କୃତିର ଆଧାର (The Foundations of Indian Culture) | ୬୦ |
| ୫. ଭାରତୀୟ ଦର୍ଶନ, ପାଶ୍ଚାତ୍ୟ ଦର୍ଶନ, ତର୍କ-ଶାସ୍ତ୍ର ଓ ନୀତିଶାସ୍ତ୍ର | ୧୨୦ |
| ୬. ପୂର୍ଣ୍ଣାଙ୍ଗ ଦର୍ଶନ (ଦିବ୍ୟ-ଜୀବନ ଗ୍ରନ୍ଥର କେତେକ ଅଧ୍ୟାୟ) | ୮୦ |
| ୭. ସାଧାରଣ ମନସ୍ତତ୍ତ୍ୱ ଓ ପୂର୍ଣ୍ଣାଙ୍ଗ ମନସ୍ତତ୍ତ୍ୱ (ଶ୍ରୀଅରବିନ୍ଦଙ୍କ 'ଯୋଗ ସମନ୍ୱୟ'ର କେତେକ ଅଧ୍ୟାୟ) | ୮୦ |
| **II. ବିଭିନ୍ନ ଭାଷା :—** | |
| ୧. ଇଂରେଜୀ | ୧୨୦ |
| ୨. ଫ୍ରେଞ୍ଚ | ୧୨୦ |
| ୩. ଯେକୌଣସି ଗୋଟିଏ ଭାରତୀୟ ଭାଷା ବା ସଂସ୍କୃତ | ୧୨୦ |

III. ବିଭିନ୍ନ ବିଜ୍ଞାନ :—

| | | | |
|---|---|---|---|
| ୧. ଗଣିତ ଶାସ୍ତ୍ର | | (Mathematics) | ୬୦୦ |
| ୨. ପଦାର୍ଥ-ବିଜ୍ଞାନ | | (Physics) : | |
| | ଥିଓରି | (Theory) | ୩୬୦ |
| | ପ୍ରାକ୍‌ଟିକାଲ୍ | (Practicals) | ୩୬୦ |
| ୩. ରସାୟନ-ବିଜ୍ଞାନ | | (Chemistry) : | |
| | ଥିଓରି | (Theory) | ୩୬୦ |
| | ପ୍ରାକ୍‌ଟିକାଲ୍ | (Practicals) | ୩୬୦ |
| ୪. ପ୍ରାଣି-ବିଜ୍ଞାନ | | (Biology) : | |
| | ଥିଓରି | (Theory) | ୧୨୦ |
| | ପ୍ରାକ୍‌ଟିକାଲ୍ | (Practicals) | ୧୨୦ |

ଖ :—ଅଧିକା ବିଷୟ :

୧. ଶିଳ୍ପ ସଂଗଠନ ଓ ପରିଚାଳନା
(Industrial Organisation & management) ୮୦

୨. ବାଣିଜ୍ୟ ସଂଗଠନ ଓ ପରିଚାଳନା
(Business Organisation & Management) ୮୦

୩. ମନସ୍ତତ୍ତ୍ୱ (ଶିକ୍ଷା ଓ ସ୍କୁଲ ସମ୍ବନ୍ଧୀୟ) ୮୦

୪. ଜର୍ମାନ୍ ଭାଷା

## ଉଚ୍ଚଶିକ୍ଷା ଶ୍ରେଣୀରେ ଛାତ୍ର-ଗ୍ରହଣ (Admission)

ଏହି ଶ୍ରେଣୀରେ ଛାତ୍ର-ଗ୍ରହଣ ନିମିତ୍ତ ପୂର୍ବେ ଯେଉଁସବୁ ନିୟମ ରଖାଯାଇଛି ତାହା ଏଠାରେ ପ୍ରଯୁଜ୍ୟ ଏବଂ ତା' ସାଙ୍ଗକୁ ନିମ୍ନଲିଖିତ ନିୟମ ଗୁଡ଼ିକ ପ୍ରତି ଦୃଷ୍ଟି ଦେବାକୁ ହେବ ।

(୧) କଳା ବିଭାଗରେ ପ୍ରବେଶ କରିବାକୁ ହେଲେ ଛାତ୍ରକୁ (ସେ ଯଦି ଏହି ଶିକ୍ଷା-କେନ୍ଦ୍ରର ଛାତ୍ର ହୋଇଥାଏ) ସମସ୍ତ ସ୍କୁଲ କୋର୍ସ ସମାପ୍ତ କରିବାକୁ ହେବ ଏବଂ ଅନ୍ତ କମ୍‌ରେ ଗଣିତ ଏବଂ ବିଜ୍ଞାନରେ SE8 ଶେଷ କରିବାକୁ ହେବ ।

(୨) ବିଜ୍ଞାନ ବିଭାଗରେ ଛାତ୍ର ପ୍ରବେଶ କରିବାକୁ ହେଲେ, (ସେ ଯଦି ଏଠାକାର ଛାତ୍ର ହୋଇଥାଏ) ଛାତ୍ରକୁ ସମସ୍ତ ସ୍କୁଲ କୋର୍ସ ଶେଷ କରିବାକୁ ହେବ ଏବଂ ଅନ୍ତ କମ୍‌ରେ ଇଂରେଜୀ ଏବଂ ଅନ୍ୟାନ୍ୟ କଳା-ବିଷୟ ଗୁଡ଼ିକରେ SE8 ଶେଷ କରିବାକୁ ହେବ ।

(୩) ବାହାର ଛାତ୍ର ନିମିତ୍ତ :

(a) ବାହାରୁ ଏଠାରେ ଉଚ୍ଚଶିକ୍ଷା ସ୍ତରରେ କୌଣସି ଛାତ୍ରକୁ କ୍ୱଚିତ୍ ଗ୍ରହଣ କରାଯାଏ । ଛାତ୍ର ବାହାରୁ ମାଟ୍ରିକ ପାସ୍ କରି ଆସିଥିଲେ ସେ ଏଠାରେ S7 କିମ୍ବା S8 ରେ ଯୋଗଦାନ କରିପାରେ । ଏଠାରେ ଛାତ୍ରକୁ ଗୋଟିଏ ପ୍ରବେଶିକା ପରୀକ୍ଷା ଦେବାକୁ ହୁଏ ଏବଂ ସେହି ପରୀକ୍ଷାର ଫଳାଫଳ ଉପରେ ତାହାର ଶ୍ରେଣୀ ନିର୍ଭର କରେ । ହାୟର କୋର୍ସ ନିମିତ୍ତ ଛାତ୍ରକୁ ବାହାର ବିଶ୍ୱବିଦ୍ୟାଳୟର ପ୍ରାକ୍-ବିଶ୍ୱବିଦ୍ୟାଳୟ ବା ପୂର୍ବତନ ଇଣ୍ଟରମିଡ଼ିଏଟ୍ ପାଶ୍ କରିଥିବା ଉଚିତ୍ । ତଥାପି ଦେଖାଯାଏ ଯେ ବାହାର ଛାତ୍ରମାନେ ଏଠିକା ଛାତ୍ରମାନଙ୍କ ସଙ୍ଗେ ଠିକ୍ ପାରିଉଠନ୍ତି ନାହିଁ ଏବଂ ଶ୍ରୀଅରବିନ୍ଦଙ୍କ ଦର୍ଶନ ବୁଝିବାରେ ସେମାନଙ୍କର ଅସୁବିଧା ହୁଏ ।

(b) ଇଂରେଜୀ ଓ ଫ୍ରେଞ୍ଚ ଭାଷାରେ ଏଠିକା ଛାତ୍ରଙ୍କ ସଙ୍ଗେ ସମକକ୍ଷ ହେଲାଭଳି ଜ୍ଞାନଥିବା ଆବଶ୍ୟକ ।

(c) ଏଠାରେ ତିନବର୍ଷ ଅଧ୍ୟୟନ ଶେଷରେ କୌଣସି ଡିଗ୍ରି ବା ଡିପ୍ଲୋମା ଇତ୍ୟାଦି ମିଳୁ ନ ଥିବାରୁ, ବାହାର ଛାତ୍ରକୁ ଏଠାରେ ଉଚ୍ଚଶିକ୍ଷା ଶ୍ରେଣୀରେ ଯୋଗଦେବାକୁ ବିଶେଷ ଉତ୍ସାହ ପ୍ରଦାନ କରାଯାଏ ନାହିଁ ।

ପୁଣି ମଧ୍ଯ ଏଠାରେ ଶିକ୍ଷା ସମାପ୍ତ କରି ବାହାରେ ସର୍ଭିସ ଇତ୍ୟାଦି କରିବା ଖୁବ୍ ସହଜ ହୁଏ ନାହିଁ । ଏ ବିଷୟରେ ପରେ ଆଲୋଚନା କରାଯିବ ।

ପ୍ରତିବର୍ଷ ଯେଉଁ ଛାତ୍ରମାନେ ଏଠାରେ ପ୍ରବେଶ କରନ୍ତି, ସେମାନେ ପ୍ରାୟ ସମସ୍ତେ ଶିଶୁ-ଶ୍ରେଣୀର ବା ପ୍ରାଇମେରୀ ଶ୍ରେଣୀର । ଉଚ୍ଚଶିକ୍ଷା ସ୍ତରରେ ଛାତ୍ର ଗ୍ରହଣ ଏ ପର୍ଯ୍ୟନ୍ତ ଉଲ୍ଲେଖଯୋଗ୍ୟ ହୋଇନାହିଁ ।

## ଶିକ୍ଷା-ବର୍ଷ (Academic year), ଛୁଟି ଏବଂ ପରୀକ୍ଷା :

ପ୍ରତ୍ୟେକ ବର୍ଷ ଡିସେମ୍ବର ତା ୧୬ ଖରେ ଶିକ୍ଷା-ବର୍ଷ ଆରମ୍ଭ ହୁଏ ଏବଂ ସମସ୍ତ ବର୍ଷଟି ଚାରୋଟି କ୍ୱାର୍ଟରରେ ବିଭକ୍ତ । ଚତୁର୍ଥ କ୍ୱାର୍ଟର ନଭେମ୍ବର ପ୍ରଥମ ସପ୍ତାହରେ ଶେଷ ହୁଏ ।

ଛୁଟିଦିବସ :

ଅନ୍ୟାନ୍ୟ ଭାରତୀୟ ବିଶ୍ୱବିଦ୍ୟାଳୟରେ ଯେପରି ଦୀର୍ଘ ଅବକାଶ ମିଳେ ଏଠାରେ ସେପରି ଅବକାଶ ମିଳେ ନାହିଁ । ସାଧାରଣତଃ ହାୟର କୋର୍ସର ଛାତ୍ରମାନଙ୍କର ସକାଳ ବେଳା (୭.୪୫—୧୧.୩୦) ପଢ଼ା ହୁଏ ଏବଂ ଉପର ବେଳା ପୂରାପୂରି ଛୁଟି । ଯେଉଁମାନଙ୍କର ବିଜ୍ଞାନ ଥାଏ ସେମାନଙ୍କର ପ୍ରାକ୍ଟିକାଲ ଉପର ବେଳା ଥାଏ । ମାଧ୍ୟମିକ ଏବଂ ଉଚ୍ଚ ମାଧ୍ୟମିକ ଶ୍ରେଣୀରେ ମଧ୍ଯ ଉପର ବେଳା (୨.୧୫—୪) କେବଳ ଦୁଇଟି କ୍ଲାସ ଥାଏ । ଏଠାରେ ସକାଳ ବେଳା ୪ଟି ପିରିୟଡ୍ ଏବଂ ଉପର ବେଳା ଦୁଇଟି ପିରିୟଡ୍ ଥାଏ । ପ୍ରତ୍ୟେକ ପିରିୟଡ୍‌ର ସମୟ ୫୦ ମିନିଟ୍ । ତେବେ ସାରାବର୍ଷ ମଧ୍ୟରେ କେତେକ ଦିନ ଛୁଟିରୂପେ ମିଳିଥାଏ (ରବିବାର ଗୁଡ଼ିକ ଅବଶ୍ୟ ଛୁଟି ଦିନ) ।

୧. ପ୍ରତ୍ୟେକ ମାସର ପ୍ରଥମ ଦିନ—

୨. ବର୍ଷରେ ଚାରୋଟି ଦର୍ଶନ-ଦିବସ— } ୨୧ ଫେବୃୟାରୀ, ୨୪ ଅପ୍ରେଲ, ୧୫ ଅଗଷ୍ଟ, ୨୪ ନଭେମ୍ବର

୩. ନଭେମ୍ବର ତା ୫୭ ରିଖରୁ—ଡିସେମ୍ବର ତା ୧୫ ରିଖ—ଏହାଛଡ଼ା ଅନ୍ୟ କୌଣସି କାରଣରୁ କୌଣସି ଦିନ ଛୁଟି ମିଳେ ନାହିଁ ।

ପରୀକ୍ଷା ପ୍ରଣାଳୀ :—

ଏଠାରେ ଛାତ୍ରମାନେ ପରୀକ୍ଷାକୁ ଭୟ କରନ୍ତି ନାହିଁ ବା ବାହାରେ ଯେପରି କଠିନ ଏବଂ କଠୋରଭାବେ ଛାତ୍ର ପରୀକ୍ଷାର ସମ୍ମୁଖୀନ ହୁଏ ଏଠାରେ ତାହା ଘଟେ ନାହିଁ । କୌଣସି ଗୋଟାଏ ପରୀକ୍ଷାରେ ଛାତ୍ରର ସମସ୍ତ ବିଦ୍ୟାବୁଦ୍ଧି ପରୀକ୍ଷା କରାଯାଏ ନାହିଁ । ସମସ୍ତ ବର୍ଷଟିକୁ ଚାରିଟି ଭାଗ ବା କ୍ୱାର୍ଟରରେ ବିଭକ୍ତ କରାହୋଇଛି ଏବଂ ପ୍ରତ୍ୟେକ କ୍ୱାର୍ଟର ଶେଷରେ ଗୋଟିଏ ପରୀକ୍ଷା ହୁଏ । ବାର୍ଷିକ ପରୀକ୍ଷା ବୋଲି କିଛି ନାହିଁ । ପ୍ରତ୍ୟେକ ପରୀକ୍ଷାରେ ବିଭିନ୍ନ ପ୍ରଶ୍ନର ପ୍ରଶ୍ନକର୍ତ୍ତା ଓ ପରୀକ୍ଷକ ଏହିଠାର ଶିକ୍ଷକମାନେହିଁ ହୁଅନ୍ତି । ପରୀକ୍ଷକ ସମୟ ସମୟରେ ବଦଳି ଥାଏ, ମାତ୍ର ଏଥିରେ ବିଶେଷ କୌଣସି ତାରତମ୍ୟ ଲକ୍ଷିତ ହୁଏ ନାହିଁ । ସର୍ବମୋଟ ନିମ୍ନଲିଖିତମତେ ଚାରି ପ୍ରକାର ପରୀକ୍ଷା ଅଛି :

| | | |
|---|---|---|
| କ୍ୱାର୍ଟରଲି ଟେଷ୍ଟ | (Quarterly Test) | —30 % |
| କ୍ଲାସ ଟେଷ୍ଟ | (Class Test) | —30 % |
| ହୋମ୍ ଓ୍ୟାର୍କ | (Home work) | —20 % |
| ଓରାଲ ଟେଷ୍ଟ | (Oral Test) | —10 % |
| ରେଗୁଲାରିଟି ଏବଂ ଆପ୍ଲିକେସନ୍ | Regularity & Applications | —10 % |

ଏହି ପରୀକ୍ଷା-ପ୍ରଣାଳୀ ମାଧ୍ୟମିକଠାରୁ ଆରମ୍ଭ କରି ହାୟର କୋର୍ସ ପର୍ଯ୍ୟନ୍ତ ଚାଲେ । ଶିଶୁଶ୍ରେଣୀ ଓ ପ୍ରାଇମେରୀ କ୍ଲାସରେ ଏଥିରେ ସାମାନ୍ୟ ପରିବର୍ତ୍ତନ କରାଯାଏ । ଏହି ପରୀକ୍ଷା-ବିଧାନ ଥିବା ସତ୍ତ୍ୱେ ଅଧ୍ୟାପକ ବା ଶିକ୍ଷକଙ୍କର ପୂର୍ଣ୍ଣ ସ୍ୱାଧୀନତା ରହିଛି : ସେ କି କି ପ୍ରକାର ପରୀକ୍ଷା କରିବାକୁ ଚାହାନ୍ତି । ଯଦି କେହି ଇଚ୍ଛାକରେ ତେବେ ସେ କ୍ୱାର୍ଟରଲି ଟେଷ୍ଟ କରି ବାକିସବୁ ନ କରିପାରେ । ପୁନଶ୍ଚ କୌଣସି ଛାତ୍ରର ଉନ୍ନତି ଓ ବିକାଶ ସମ୍ବନ୍ଧରେ ଶିକ୍ଷକଙ୍କ

ମତାମତକୁ ବିଶେଷ ଜୋର ଦିଆଯାଏ । କିନ୍ତୁ ଛାତ୍ରର ପରୀକ୍ଷାର ଫଳାଫଳ ଓ ପ୍ରତ୍ୟେକ ବିଷୟ ମା' ସ୍ୱୟଂ ବିଗ୍ଭର କରନ୍ତି ଏବଂ ତାହାହିଁ ଶେଷ ସିଦ୍ଧାନ୍ତ ବୋଲି ସ୍ୱୀକୃତ ହୁଏ ।

ପ୍ରମୋସନ :—

ଏଠାରେ ପ୍ରମୋସନ ବା ଉପର କ୍ଲାସକୁ ଉତ୍ତୀର୍ଣ୍ଣ ହେବା ବିଷୟ ଆଲୋଚନା କରିବା ଦରକାର । ଏଠାରେ ପ୍ରତ୍ୟେକ ବିଷୟରେ ପାଶ୍‌ମାର୍କ ଶତକଡ଼ା ୫୦ ଏବଂ ଡିଷ୍ଟିଂକ୍‌ସନ ଶତକଡ଼ା ୭୫ । ଏଠାରେ ଛାତ୍ରମାନେ ଶତକଡ଼ା ୯୫, ୯୮ ପର୍ଯ୍ୟନ୍ତ ନମ୍ବର କୌଣସି କୌଣସି କଳା (Arts) ବିଷୟରେ ପାଇବାର ଦେଖାଯାଏ । ଯଦି କୌଣସି ଛାତ୍ର କୌଣସି ବିଷୟ ଶତକଡ଼ା ୩୦ ନମ୍ବର ରଖିଥାଏ, କିନ୍ତୁ ସର୍ବମୋଟ ଶତକଡ଼ା ୬୦ ନମ୍ବର ରଖିଥାଏ, ତେବେ ସେ ଉପର କ୍ଲାସକୁ ଉତ୍ତୀର୍ଣ୍ଣ ହୁଏ । ଏଠାରେ ଫେଲ୍ ଛାତ୍ରଙ୍କ ସଂଖ୍ୟା ବହୁତ କମ୍, ଶତକଡ଼ା ୫ ବି ହେବ ନାହିଁ । ପ୍ରତ୍ୟେକ କ୍ଲାସରେ ଅବଶ୍ୟ ୧୫।୨୦ ଛାତ୍ରରୁ ବେଶୀ ଦେଖା ଯାଆନ୍ତି ନାହିଁ । ପୁଣି ମଧ୍ୟ ଏଠାରେ ଅନ୍ୟ ଏକ ବ୍ୟବସ୍ଥା ଅଛି । ଏଠାରେ ଛାତ୍ରର ବିଷୟ (subjects) ଅନୁସାରେ କ୍ଲାସ ନିର୍ଣ୍ଣୟ ହୁଏ । କୌଣସି ଛାତ୍ରର ଇଂରେଜୀ ଜ୍ଞାନ ବେଶୀ ଥାଇପାରେ ମାତ୍ର ଅଙ୍କରେ ସେ ଅପାରଗ ହୋଇପାରେ । ସେଥିପାଇଁ ସେ ଇଂରାଜୀରେ ଉପର କ୍ଲାସକୁ ପ୍ରମୋସନ ପାଇଥାଏ ମାତ୍ର ଗଣିତରେ ତଳ କ୍ଲାସରେ ପଢ଼େ । ସେଥିପାଇଁ ଏଠାରେ ଜଣେ ଛାତ୍ର ବିଭିନ୍ନ ଶ୍ରେଣୀରେ ପଢ଼େ—ତାର ବିଭିନ୍ନ ବିଷୟରେ ପାରଦର୍ଶିତା ଅନୁଯାୟୀ । କୌଣସି ଗୋଟିଏ ବିଷୟରେ ଛାତ୍ର ଫେଲ୍ ହେଲେ ପୁନରାୟ ସେହି କ୍ଲାସରେ ସେଥିପାଇଁ ଅଟକି ରହିବାକୁ ହୁଏ କିନ୍ତୁ ଅନ୍ୟ ପାଶ୍-କରିଥିବା ବିଷୟରେ ଉପର ଶ୍ରେଣୀକୁ ଚାଲିଯାଏ । ଏହାଦ୍ୱାରା ଛାତ୍ର ନିଜର ଉନ୍ନତ ବା ଅବନତରେ ମି‍୍ରୟମାଣ ହୁଏ ନାହିଁ ।

ପ୍ରୋଗ୍ରେସ୍ ବୁକ୍ :—

ପ୍ରତ୍ୟେକ କ୍ୱାର୍ଟର୍ଲି ଟେଷ୍ଟ ବା ଅନ୍ୟାନ୍ୟ ଟେଷ୍ଟର ଫଳାଫଳ ଛାତ୍ରମାନଙ୍କର ପ୍ରୋଗ୍ରେସ୍ ବୁକ୍ (Progress Book)ରେ ଶିକ୍ଷକଙ୍କୁ ଲେଖିବାକୁ ହୁଏ । ଏହି ପ୍ରୋଗ୍ରେସ୍ ବହିରେ ଛାତ୍ରର ସମସ୍ତ ବିବରଣୀ : ପରୀକ୍ଷାର ଫଳାଫଳ, ବିଭିନ୍ନ ପୁସ୍ତକର ଅଧ୍ୟୟନ, କଳା, ସଙ୍ଗୀତ, ନୃତ୍ୟ ବା ଅଙ୍କନର ରିପୋର୍ଟ, ତାର ଶାରୀରିକ ଶିକ୍ଷାର ବିଭିନ୍ନ ପ୍ରତିଯୋଗିତାର ଫଳାଫଳ ଥାଏ । ଏହି ପ୍ରୋଗ୍ରେସ୍ ବୁକ୍ ପ୍ରତ୍ୟେକ କ୍ୱାର୍ଟର ଶେଷରେ ଛାତ୍ରଙ୍କୁ ଦିଆଯାଏ ଏବଂ ସେମାନେ ତାହା ତାଙ୍କର ଅଭିଭାବକଙ୍କୁ ଦେଖାଇ, ତାଙ୍କ ଦସ୍ତଖତସହ ଫେରାଇ ଦିଅନ୍ତି । ଏହାଦ୍ୱାରା ଛାତ୍ରର ଅଭିଭାବକ ମଧ୍ୟ ତାର ଉନ୍ନତି ବା ଅବନତି ସମ୍ବନ୍ଧରେ ଅବଗତ ରହନ୍ତି ।

ସାର୍ଟିଫିକେଟ୍ :—

ଏଠାରେ ପରୀକ୍ଷା ଶେଷରେ କୌଣସି ପ୍ରକାର ସାର୍ଟିଫିକେଟ୍ ବା ଡିପ୍ଲୋମା ଇତ୍ୟାଦି ଦିଆଯାଏ ନାହିଁ । କୌଣସି ଛାତ୍ର ତିନି ବର୍ଷ ଡିଗ୍ରି କୋର୍ସ ଶେଷରେ ବାହାର ବିଶ୍ୱବିଦ୍ୟାଳୟରେ ପଢ଼ିବାକୁ ଇଚ୍ଛା କଲେ ବା ଭାରତ ସରକାରଙ୍କ ଅଧୀନରେ ଚାକିରି କରିବାକୁ ଚାହିଲେ, ତାହା ସେ ନିଜ ଦାୟିତ୍ୱରେ କରିପାରିବ । ତେବେ ଶିକ୍ଷା-କେନ୍ଦ୍ର ଏହି ସାର୍ଟିଫିକେଟ୍ ଦେବ ଯେ ଛାତ୍ର (ଯଦି) ଦକ୍ଷତା ଓ ସଫଳତା ସହକାରେ ଏଠାରେ ତିନି ବର୍ଷ ଡିଗ୍ରି କୋର୍ସ ବିଜ୍ଞାନ ବା କଳା ବିଭାଗରେ ସମାପ୍ତ କରିଅଛି ।

ଏ ସମ୍ବନ୍ଧରେ ବିଶେଷ ଉଲ୍ଲେଖଯୋଗ୍ୟ ଘଟଣା ଏହି ଯେ ଏହି ଶିକ୍ଷା-କେନ୍ଦ୍ରକୁ ଭାରତ ସରକାରଙ୍କ ଶିକ୍ଷା-ମନ୍ତ୍ରଣାଳୟର ଏକ କମିଟି (୧୯୬୧ ସାଲ ଅକ୍ଟୋବର ତା ୧୧ ରିଖ) ତିନି ଦିନ ଧରି ଆମୂଳଚୂଳ ପରିଦର୍ଶନ କରିଥିଲେ ଏବଂ ଶିକ୍ଷା-କେନ୍ଦ୍ରର ଅଧ୍ୟାପକ ତଥା ଛାତ୍ରମାନଙ୍କସହ ନାନା ଆଲୋଚନା କରି ଫେରିଯାଇ ଭାରତ ସରକାରଙ୍କୁ ଏକ ରିପୋର୍ଟ ଦେଲେ । ଏହି କମିଟିରେ

ଗାନ୍ଧୀ-ସ୍ମାରକ-ନିଧିର ଚେୟାରମ୍ୟାନ ତଥା ବିହାରର ପୂର୍ବତନ ରାଜ୍ୟପାଳ ଶ୍ରୀଯୁକ୍ତ ଆର୍. ଆର୍. ଦିବାକର, ଦିଲ୍ଲୀ ବିଶ୍ୱବିଦ୍ୟାଳୟର ତାତ୍କାଳୀନ କୁଳପତି ଅଧ୍ୟାପକ ନିର୍ମଳକୁମାର ସିଦ୍ଧାନ୍ତ, ଏବଂ ଭାରତ ସରକାରଙ୍କ ଶିକ୍ଷା-ମନ୍ତ୍ରଣାଳୟର ଡେପୁଟି ଆଡ୍‌ଭାଇଜର ମିସ୍ ମରିଏଲ୍ ଓ୍ୱାସି ସଭ୍ୟ ଥିଲେ । ଏହି କମିଟିର ରିପୋର୍ଟ ଉପରେ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟ (Ministry of Home Affairs) ଇଉ-ନିୟନ୍ ପବ୍ଲିକ୍ ସର୍ଭିସ କମିଶନ୍‌ଙ୍କ ସହ ପରାମର୍ଶ କରି ଏକ ପତ୍ରରେ ଶ୍ରୀଅରବିନ୍ଦ ଅନ୍ତର୍ଜାତିକ ଶିକ୍ଷା-କେନ୍ଦ୍ରକୁ ଜଣାଇ ଦେଲେ ଯେ "ଶ୍ରୀଅରବିନ୍ଦ ଅନ୍ତର୍ଜାତିକ ଶିକ୍ଷା-କେନ୍ଦ୍ର"ର ହାୟର କୋର୍ସରୁ ଉତ୍ତୀର୍ଣ୍ଣ ଛାତ୍ରମାନେ ଭାରତ ସର-କାରଙ୍କ ସ୍ୱୀକୃତ ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟ ଗୁଡ଼ିକର ପ୍ରଥମ ଡିଗ୍ରି (first degree) ଅର୍ଥାତ୍ ବି.ଏ. ବା ବି.ଏସ୍‌ସି.ରୁ ଉତ୍ତୀର୍ଣ୍ଣ ଛାତ୍ରମାନଙ୍କସହ ସମାନ ଏବଂ କେନ୍ଦ୍ର ସରକାରଙ୍କ ବିଭିନ୍ନ କାର୍ଯ୍ୟକ୍ଷେତ୍ରରେ ନିଯୁକ୍ତି ପାଇପାରିବେ ।" ଏ ସମ୍ବନ୍ଧରେ No. 6/2/61 Esst. D. Govt. of India, Ministry of Home Affairs, New Delhi-11, the 4th. August 1962 (13th Sravana, 1884) ର Office Memorandum ରେ ନିମ୍ନଲିଖିତ ଘୋଷଣାଟି ପ୍ରକାଶିତ ହୋଇଛି ।

"The undersigned is directed to say that the Govt. of India has decided in consultation with the Union Public Service comission, to recognise the successful completion by 'full students' of the Higher Course of Sri Aurobindo International Centre of Education, Pondicherry, as equivalent to the first degree of the recognised Indian University (ie. B. A. or B. Sc.) for purpose of appointment to services & posts under the Central Government."

Sd. / U. S. Bajpai,
Under Secretary to the Govt. of India.

5

ଏ ଘୋଷଣାରୁ ସ୍ପଷ୍ଟ ଯେ ଭାରତ ସରକାର ଏଠାରେ ପ୍ରଚଳିତ ତିନ ବର୍ଷିଆ ଡିଗ୍ରି କୋର୍ସକୁ ବିଏ. ବିଏସି. ଡିଗ୍ରି ସଙ୍ଗେ ସମାନ ବୋଲି ସ୍ୱୀକାର କରିଛନ୍ତି ଏବଂ ଏଠାର ଛାତ୍ରମାନେ ଅଖିଳ ଭାରତୀୟ ଚାକିରୀ ନିମିତ୍ତ ବିଭିନ୍ନ ପ୍ରତିଯୋଗିତାମୂଳକ ପରୀକ୍ଷାରେ ଯୋଗଦାନ କରିପାରିବେ । ଏଠାରେ ଆଉ ମଧ୍ୟ କହି ରଖିବା ଉଚିତ ଯେ ଶିକ୍ଷା-କେନ୍ଦ୍ରରେ ଯେଉଁ ପାଠ୍ୟ ବ୍ୟବସ୍ଥା ରହିଛି ତହିଁରେ ଛାତ୍ରମାନଙ୍କୁ ଏପରି କୌଣସି ପ୍ରତିଯୋଗିତାମୂଳକ ପରୀକ୍ଷା ବା ଚାକି-ରୀରେ ଯୋଗଦାନ ଦେବାକୁ ଉତ୍ସାହ ଦିଆଯାଏ ନାହିଁ ବା ସେଥିପାଇଁ ଟ୍ରେନିଙ୍ଗ୍ ଦିଆଯାଏ ନାହିଁ । ଶିକ୍ଷାଦାନର ବ୍ୟବସ୍ଥା କୌଣସି ବାହାର ପରୀକ୍ଷାର ସମ୍ମୁଖୀନ ହେବା ନିମିତ୍ତ ଉଦ୍ଦିଷ୍ଟ ନୁହେଁ । ଏ ବିଷୟରେ ମା'ଙ୍କର ମତାମତ ଖୁବ୍ ସ୍ପଷ୍ଟ । ଏ ସମ୍ବନ୍ଧରେ ଶ୍ରୀମା ତା ୧୭-୭-୧୯୬୦ ସାଲରେ ଯେଉଁ ଐତିହାସିକ ଘୋଷଣା, ଶ୍ରୀଅରବିନ୍ଦଙ୍କ ଆନ୍ତର୍ଜାତିକ ଶିକ୍ଷା-କେନ୍ଦ୍ରର ମୁଖପତ୍ର ବୁଲେଟିନ୍‌ରେ (୧୯୬୦ ଅଗଷ୍ଟ ସଂଖ୍ୟା) କରିଛନ୍ତି ତାହା ପ୍ରତି ପ୍ରତ୍ୟେକ ପାଠକଙ୍କର ଦୃଷ୍ଟି ଆକର୍ଷଣ କରୁଛି :—

## ଶିକ୍ଷା-କେନ୍ଦ୍ରର ଛାତ୍ରମାନଙ୍କୁ କାହିଁକି ଡିପ୍ଲୋମା ବା ସାର୍ଟିଫିକେଟ୍ ଦିଆ ହୁଏ ନାହିଁ :

"ପ୍ରାୟ ଏକ ଶତାବ୍ଦୀ ହେଲା ମାନବ-ସମାଜ ଗୋଟାଏ ବ୍ୟାଧିଦ୍ୱାରା ଆକ୍ରାନ୍ତ ହୋଇ ପଡ଼ିଛି; ଧୀରେ ଧୀରେ ଏହି ବ୍ୟାଧି ବ୍ୟାପ୍ତ ହେଉଅଛି ଏବଂ ଆମ୍ଭମାନଙ୍କର ସମୟରେ ଏହା ସବୁଠାରୁ ତୀବ୍ର ଆକାର ଧାରଣ କରିଛି । ଏହି ବ୍ୟାଧିର ନାମ ହେଲା ଉପଯୋଗିତାବାଦ (Utilitarianism) । ସକଳ ବସ୍ତୁ ସକଳ ବ୍ୟକ୍ତି, ସକଳ ପରିସ୍ଥିତି ଏବଂ ସମସ୍ତ କାର୍ଯ୍ୟକଳାପ ଆଜି ଏକମାତ୍ର ଏହି ଦୃଷ୍ଟିକୋଣରୁ ବିଚାର କରାଯାଉଛି ଏବଂ ସେସବୁର ମୂଲ୍ୟ ଏହି ଦୃଷ୍ଟିରୁ ନିର୍ଦ୍ଧା-ରିତ ହେଉଅଛି । ଯଦି କୌଣସି ବସ୍ତୁ ଉପଯୋଗୀ ନୁହେଁ, ତେବେ ତାହାର କୌଣସି ମୂଲ୍ୟ ନାହିଁ, ଅବଶ୍ୟ ଏକଥା ସ୍ୱୀକାର୍ଯ୍ୟ ଯେ ଅନୁପଯୋଗୀ ବସ୍ତୁଠାରୁ

ଉପଯୋଗୀ ବସ୍ତୁର ମୂଲ୍ୟ ବେଶୀ । ତେବେ ପ୍ରଥମରୁ ଆମ୍ଭମାନଙ୍କୁ ବୁଝିବାକୁ ହେବ, "ଉପଯୋଗିତା"ର ଅର୍ଥ କ'ଣ ? କାହାପାଇଁ ଏହା ଉପଯୋଗୀ ? କେଉଁଥିପାଇଁ ଏହା ଉପଯୋଗୀ ? ଏବଂ କେତେଦୂର ଏହା ଉପଯୋଗୀ ?

ବସ୍ତୁତଃ ଏହା ଦେଖାଯାଉଛି ଯେ ଯେଉଁ ଜାତିଗଣ ନିଜକୁ ବେଶୀ ସଭ୍ୟ ବୋଲି ମନେ କରନ୍ତି, ସେମାନେ ସେହି ବସ୍ତୁକୁ ଉପଯୋଗୀ ବୋଲି କହନ୍ତି ଯାହା ଅର୍ଥ ପ୍ରାପ୍ତି, ଅର୍ଥ ଉପାର୍ଜ୍ଜନ ଓ ଅର୍ଥ ଉତ୍ପନ୍ନ କରିବାରେ ସହାୟତା କରେ । ସବୁକିଛିହିଁ ଏହି ଆର୍ଥିକ ଦୃଷ୍ଟିକୋଣରୁ ବିଚାର କରାଯାଉଛି । ଏହାକୁହିଁ ମୁଁ ଉପଯୋଗିତାବାଦ ବୋଲି କହେ । କିନ୍ତୁ ଏହି ରୋଗ ଅତ୍ୟନ୍ତ ସଂକ୍ରାମକ; ଏପରିକି ଶ୍ରେଷ୍ଠ ପିଲାମାନେ ଏହା କବଳରୁ ରକ୍ଷା ପାଇପାରନ୍ତି ନାହିଁ । ଯେତେବେଳେ ଅର୍ଥାତ୍ ଯେଉଁ ବୟସରେ ଶିଶୁମାନେ ସୌନ୍ଦର୍ଯ୍ୟ, ଉଦାରତା, ଓ ପୂର୍ଣ୍ଣତାର ସ୍ୱପ୍ନ ଦେଖିବା ଉଚିତ, ଆଜି ସେହି ବୟସରେ ସେମାନେ ଅର୍ଥର ସ୍ୱପ୍ନ ଦେଖୁଛନ୍ତି ଏବଂ କିପରି ତାହା ଉପାର୍ଜ୍ଜନ କରାଯାଇ ପାରିବ, ସେ ବିଷୟରେ ଚିନ୍ତିତ ହୋଇ ଉଠୁଛନ୍ତି, ଯଦିଓ ସେହି ସୌନ୍ଦର୍ଯ୍ୟ ଓ ପୂର୍ଣ୍ଣତାର ସ୍ୱପ୍ନ ଦେଖିବା ମନୁଷ୍ୟର ସାଧାରଣ ଚେତନା ନିକଟରେ ଏକ ଅର୍ଥହୀନ ବସ୍ତୁ, ତଥାପି ଏହା ମନୁଷ୍ୟର ସେହି ନିମ୍ନ ସାଧାରଣ ଚେତନା (Common sense) ଠାରୁ ନିଶ୍ଚୟ ଉଚ୍ଚତର ବସ୍ତୁ ।

ସୁତରାଂ ଛାତ୍ରମାନେ ଯେତେବେଳେ ସେମାନଙ୍କର ବିଦ୍ୟାଧ୍ୟୟନ ବିଷୟ ବିଚାର କରୁଛନ୍ତି, ସେତେବେଳେ ସର୍ବୋପରି ସେମାନେ ସ୍ଥିର କରୁଛନ୍ତି ସେମାନଙ୍କ ନିକଟରେ ସର୍ବାପେକ୍ଷା କେଉଁ ଜିନିଷ ଉପଯୋଗୀ ହେବ, ଯଦ୍ଦ୍ୱାରା ପରବର୍ତ୍ତୀକାଳରେ, ଅର୍ଥାତ୍ ଯେତେବେଳେ ସେମାନେ ବୟଃପ୍ରାପ୍ତ ହେବେ ସେତେବେଳେ ପ୍ରଚୁର ଅର୍ଥ ଉପାର୍ଜ୍ଜନ କରିପାରିବେ ।

ଆଉ ଏକ ଦୃଷ୍ଟିକୋଣରୁ ସେମାନଙ୍କ ନିମିତ୍ତ ଯେଉଁ ବିଷୟ ଅତି ଗୁରୁତ୍ୱପୂର୍ଣ୍ଣ ବୋଲି ମନେହୁଏ ତାହାହେଲା କୃତିତ୍ୱସହ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ନିମନ୍ତେ ପ୍ରସ୍ତୁତ ହେବା, କାରଣ ଏହି ଡିପ୍ଲୋମା, ସାର୍ଟିଫିକେଟ୍ ଓ

ଉପାଧିଦ୍ୱାରହିଁ ସେମାନେ ସମାଜରେ ଉଚ୍ଚସ୍ଥାନ ଲାଭ କରିବାକୁ ସକ୍ଷମ ହେବେ ଓ ପ୍ରଚୁର ଅର୍ଥ ଉପାର୍ଜ୍ଜନ କରିପାରିବେ ।

ଏହାପର ଛାତ୍ରମାନଙ୍କ ନିମିତ୍ତ ବିଦ୍ୟାଧ୍ୟୟନର ଅନ୍ୟ କୌଣସି ଲକ୍ଷ୍ୟ ନାହିଁ ବା ସେଥିରେ ସେମାନଙ୍କର ରୁଚି ନାହିଁ ।

ଜ୍ଞାନଲାଭ କରିବାପାଇଁ ଶିକ୍ଷା କରିବା, ପ୍ରକୃତି ଓ ଜୀବନର ରହସ୍ୟ ଉଦ୍‌ଘାଟନ ନିମିତ୍ତ ଅଧ୍ୟୟନ କରିବା, ନିଜ ଚେତନାର ଅଭିବୃଦ୍ଧି ସାଧନ କରିବା, ନିଜକୁ ଶିକ୍ଷିତ କରିବା, ଜୀବନ ଉପରେ ପୂର୍ଣ୍ଣ କର୍ତ୍ତୃତ୍ୱ ଆଣିବା ନିମିତ୍ତ ନିଜକୁ ଶୃଙ୍ଖଳିତ କରିବା, ଦୁର୍ବଳତା, ଅସାମର୍ଥ୍ୟ ଓ ଅଜ୍ଞାନତାକୁ ଅତିକ୍ରମ କରିବାକୁ ଉଦ୍ୟମ କରିବା, ଜୀବନରେ ଏକ ବିଶାଳତର, ମହତ୍ତର, ଉଦାରତର ଏବଂ ଉଚ୍ଚତର ଲକ୍ଷ୍ୟ ଆଡ଼କୁ ଅଗ୍ରସର ହେବା ନିମିତ୍ତ ନିଜକୁ ପ୍ରସ୍ତୁତ କରିବା—ଏହିସବୁ ବିଷୟରେ ଏହି ଛାତ୍ରମାନେ ଆଦୌ ଚିନ୍ତା କରନ୍ତି ନାହିଁ; ବରଂ ଏସବୁକୁ ଏକ କାଳ୍ପନିକ ଆଦର୍ଶ (utopia) ବୋଲି ମନେ କରନ୍ତି । ଆଉ ସେମାନଙ୍କର ଏକମାତ୍ର ସାରକଥା ହେଲା କିପରି କାର୍ଯ୍ୟକାରୀ (Practical) ଓ ଚତୁର ହେବା ଏବଂ ଅର୍ଥ ଉପାର୍ଜ୍ଜନ ନିମିତ୍ତ ନିଜକୁ କିପରି ପ୍ରସ୍ତୁତ କରିବା ଓ ତାହାର ଉପାୟ ଶିକ୍ଷା କରିବା ।

ଯେଉଁ ତରୁଣ ଛାତ୍ରମାନେ ଏହି ବ୍ୟାଧିଦ୍ୱାରା ଆକ୍ରାନ୍ତ ଶ୍ରୀଅରବିନ୍ଦ ଅନ୍ତର୍ଜାତିକ ଶିକ୍ଷା-କେନ୍ଦ୍ର ସେମାନଙ୍କ ନିମିତ୍ତ ଉପଯୁକ୍ତ ସ୍ଥାନ ନୁହେଁ । ଏହି କଥା ଛାତ୍ରମାନଙ୍କ ନିକଟରେ ପ୍ରମାଣ କରିବାପାଇଁ ଆମ୍ଭେମାନେ ସେମାନଙ୍କୁ କୌଣସି ସରକାରୀ ଚାକିରି ବା ପ୍ରତିଯୋଗିତାମୂଳକ ପରୀକ୍ଷା ନିମିତ୍ତ ପ୍ରସ୍ତୁତ କରୁନାହିଁ ଅଥବା ସେମାନଙ୍କୁ କୌଣସି ଡିପ୍ଲୋମା ବା ସାର୍ଟିଫିକେଟ୍ ଅଥବା ଉପାଧି ଦେଉ ନାହିଁ, ଯାହାକି ସେମାନଙ୍କୁ ବାହାର ଜଗତରେ ସହାୟତା କରିପାରେ ।

ଆମ୍ଭେମାନେ ଏଠାରେ ଏକମାତ୍ର ସେହିମାନଙ୍କୁ ଗ୍ରହନ୍ତୁ, ଯେଉଁମାନେ ଏକ ଉଚ୍ଚତର ଓ ଶ୍ରେଷ୍ଠତର ଜୀବନ ନିମିତ୍ତ ଅଭୀପ୍ସା କରନ୍ତି, ଯେଉଁମାନେ ଜ୍ଞାନ ଓ ପୂର୍ଣ୍ଣତା ନିମିତ୍ତ ଉତ୍ସୁକ ତଥା ଯେଉଁମାନେ ଆଗ୍ରହ ଓ ଉତ୍ସାହପୂର୍ବକ ଏକ ବିଶାଳତର ସର୍ବାଙ୍ଗୀନ ଓ ପରିପୂର୍ଣ୍ଣ ଭବିଷ୍ୟତ ପ୍ରତି ପ୍ରତୀକ୍ଷା କରି ରହିଛନ୍ତି ।”

# ଶିକ୍ଷା-କେନ୍ଦ୍ରର ପରିଚାଳନା ଓ ନିୟନ୍ତ୍ରଣ

ଶିକ୍ଷା-କେନ୍ଦ୍ରର ପରିଚାଳନା ଓ ନିୟନ୍ତ୍ରଣର ଭାର ଏକ କାଉନ୍‌ସିଲ (Council) ହାତରେ ନ୍ୟସ୍ତ ରହିଛି ଏବଂ ଶିକ୍ଷାକେନ୍ଦ୍ର ଓ କାଉନ୍‌ସିଲର ପ୍ରତିଷ୍ଠାତା ପ୍ରେସିଡେଣ୍ଟ ହେଲେ ଶ୍ରୀମା ଓ ସେ ଶିକ୍ଷା-କେନ୍ଦ୍ରର ଯାବତୀୟ କାର୍ଯ୍ୟର ଭାର ବହନ କରିଛନ୍ତି ଏବଂ ପ୍ରତ୍ୟେକ ଅବସ୍ଥାରେ ଏବଂ ପ୍ରତ୍ୟେକ ବିଷୟରେ, ପରିଚାଳନା କରନ୍ତି । ସମସ୍ତ ଦୈନନ୍ଦିନ ବ୍ୟାପାରରେ ମଧ୍ୟ ମା'ଙ୍କ ନିର୍ଦ୍ଦେଶ ଓ ପରିଚାଳନାକୁ ଅପେକ୍ଷା କରାଯାଏ ।

ଏହାଛଡ଼ା ଶିକ୍ଷା-କେନ୍ଦ୍ରର ପ୍ରଧାନ ମୁଖ୍ୟକର୍ମକର୍ତ୍ତା ହେଲେ ଶିକ୍ଷା-କେନ୍ଦ୍ରର ଡିରେକ୍‌ଟର ଶ୍ରୀ ପବିତ୍ର, ତା'ପରେ ଡେପୁଟି ଡିରେକ୍‌ଟର ଶ୍ରୀ ଶିଶିରକୁମାର ମିତ୍ର, ରେଜିଷ୍ଟ୍ରାର ଶ୍ରୀ କେ. ଏମ୍. ଯୋଶୀ, ତା'ପରେ ଶିକ୍ଷକ ଓ ଅଧ୍ୟାପକ ବୃନ୍ଦ । କୌଣସି ଶିକ୍ଷକର ନିଯୁକ୍ତି ବା ବହିଷ୍କରଣ ଶ୍ରୀମା'ଙ୍କ ଉପରେ ନିର୍ଭର କରେ । ଶିକ୍ଷା-କେନ୍ଦ୍ରର ପ୍ରତ୍ୟେକ ଛାତ୍ରଛାତ୍ରୀ, ଶିକ୍ଷକ ଓ ଅଧ୍ୟାପକ ଶ୍ରୀମା'ଙ୍କ ସଙ୍ଗେ ପ୍ରତ୍ୟକ୍ଷଭାବେ ସମ୍ପୃକ୍ତ ଏବଂ ଯେକୌଣସି ବିଷୟରେ ନିର୍ଦ୍ଦେଶ ଗ୍ରହଣ କରିପାରନ୍ତି ।

ଏଠାରେ ୧୬୦ଜଣ ଶିକ୍ଷକ ଓ ଅଧ୍ୟାପକ ରହିଛନ୍ତି । ସେଥିମଧ୍ୟରୁ ୬୦ଜଣ ହେଲେ ହାୟର କୋର୍ସର ଅଧ୍ୟାପକ । ଏଠାରେ ଶିକ୍ଷକମାନେ ଦରମା ନିଅନ୍ତି ନାହିଁ, ବା ତାଙ୍କର କ୍ୟାରେକ୍‌ଟର ରୋଲ୍ ଲେଖା ହୁଏ ନାହିଁ । ପ୍ରତ୍ୟେକ ଶିକ୍ଷକ ଆଶ୍ରମର ସାଧକ ବା ସାଧିକା ଏବଂ ଏକ ପୂର୍ଣ୍ଣାଙ୍ଗ ଅଧ୍ୟାତ୍ମ ଆଦର୍ଶକୁ ଜୀବନର ଲକ୍ଷ୍ୟରୂପେ ଗ୍ରହଣ କରିଛନ୍ତି ।

ଛାତ୍ରମାନଙ୍କୁ କୌଣସି ପ୍ରକାର ଟ୍ୟୁସନ ଫି ଦେବାକୁ ହୁଏ ନାହିଁ । କେବଳ ବୋର୍ଡିଂ ଓ ଲଜିଂ ନିମିତ୍ତ ମାସିକ ଏକଶହ ଟଙ୍କା ଦେବାକୁ ହୁଏ ।

# ବିଭିନ୍ନ ଶିକ୍ଷାର କାର୍ଯ୍ୟକ୍ରମ :

ଏଥିପୂର୍ବରୁ ପ୍ରଥମଭାଗରେ ପୂର୍ଣ୍ଣାଙ୍ଗ ଶିକ୍ଷାର ଯେଉଁ ଚତୁର୍ବିଧ ଅଙ୍ଗ ବିଷୟରେ ବର୍ଣ୍ଣନା କରାଯାଇଛି,—ଶାରୀରିକ, ପ୍ରାଣିକ, ମାନସିକ ଚୈତ୍ୟ ଓ ଆଧ୍ୟାତ୍ମିକ ଶିକ୍ଷା —ଏ ପ୍ରତ୍ୟେକର କାର୍ଯ୍ୟକ୍ରମ ଓ ସଂଗଠନ ବିଷୟରେ ଏଠାରେ କିଛି କହିବା । ମାନସିକ ଶିକ୍ଷାର ପରିଚାଳନା ଓ ସଂଗଠନ ବିଷୟ ଏବଂ ଅନ୍ୟାନ୍ୟ ଖବର ଶିକ୍ଷା-କେନ୍ଦ୍ରର "Hand Book of Education Centre 1960ରୁ ଦେଖିବାକୁ ମିଳିବ । ସୁତରାଂ ଏ ବିଷୟରେ ଏଠାରେ ବିଶେଷ ବର୍ଣ୍ଣନା କରିବା ଆବଶ୍ୟକ ନାହିଁ । ଶିକ୍ଷା-କେନ୍ଦ୍ରର ଶାରୀରିକ ଶିକ୍ଷାର ସଂଗଠନ, ପରିଚାଳନା ଏପରି ବ୍ୟାପକ, ବିସ୍ତୃତ ଓ ଘଟଣା ବହୁଳ ଯେ ତାହା ବର୍ଣ୍ଣନା କରିବାକୁ ଗଲେ ଏକ ସ୍ୱତନ୍ତ୍ର ପ୍ରବନ୍ଧ ହେବ । ତଥାପି ଏଠାରେ ଶାରୀରିକ ଶିକ୍ଷାର ସଂଗଠନ ଓ ପରିଚାଳନା ସମ୍ବନ୍ଧରେ କେତେକ ବିବରଣୀ ଦେବା :—

## ଶାରୀରିକ ଶିକ୍ଷାର ସଂଗଠନ ଓ ପରିଚାଳନା :—

ଶ୍ରୀଅରବିନ୍ଦ ଆଶ୍ରମର ଏକ ବିଶେଷ ଦର୍ଶନୀୟ ବସ୍ତୁ ହେଲା ଶାରୀରିକ ଶିକ୍ଷା—ଏହାର ସଂଗଠନ, ପରିଚାଳନା, ନିୟନ୍ତ୍ରଣ ଏପରି ଧାରାବାହିକ, ବିଧିବଦ୍ଧ, ଶୃଙ୍ଖଳିତ, ନିୟମିତ ଯେ ତାହା ଦେଖିଲେ ବିସ୍ମିତ ହେବାକୁ ହୁଏ । ଏକଥା କୁହାଯାଇପାରେ ଯେ ଭାରତବର୍ଷର କୌଣସି ବିରାଟ ବ୍ୟାୟାମଶାଳା ବା ଶାରୀରିକ ଶିକ୍ଷାକେନ୍ଦ୍ରରେ ଏକାବେଳକେ ଏତେ ଉପକରଣ ଓ ଶିକ୍ଷାର ବସ୍ତୁ ବି ନ ଥିବ । ଜଣେ ପାଶ୍ଚାତ୍ୟ ଶାରୀରିକ ଶିକ୍ଷାବିତ୍‌ଙ୍କ ମତରେ ଇଉରୋପର ବଡ଼ ବଡ଼ ସହରରେ ଏପରି ବିସ୍ତୃତ, ବ୍ୟାପକ ଶାରୀରିକ ଶିକ୍ଷାର ବ୍ୟବସ୍ଥା ନାହିଁ । ପୃଥିବୀ ବିଖ୍ୟାତ ରୁଷ ଜିମ୍ନାଷ୍ଟିକ ଦଳ ୧୯୫୬ ଅପ୍ରେଲ ତା ୩ ରିଖରେ ଆଶ୍ରମକୁ ନିମନ୍ତ୍ରିତ ହୋଇ ଆସିଥିଲେ । ସେମାନଙ୍କ ଦୁଇଦିନ ଅବସ୍ଥାନ ମଧ୍ୟରେ ଓ ଶାରୀରିକ ଶିକ୍ଷା-କେନ୍ଦ୍ରର ପରିଦର୍ଶନ ପରେ ସେମାନେ ମତ ପ୍ରକାଶ କରିଥିଲେ ଯେ ଏଠା ଶାରୀରିକ ଶିକ୍ଷା-କେନ୍ଦ୍ର ଏକ ବିଶିଷ୍ଟ ସଂସ୍ଥା ଏବଂ ଏଠାରେ ଏପରି ଶିକ୍ଷାର୍ଥୀ ଅଛନ୍ତି ଯାହାଙ୍କ ମଧ୍ୟରେ ପ୍ରତିଭା ଓ ସାମର୍ଥ୍ୟ ଅଛି ।

ଶାରୀରିକ ଶିକ୍ଷାକୁ ଏଠାରେ ଏତେ ଗୁରୁତ୍ୱ ଦିଆଯାଇଛି କାହିଁକି ? ଏପରି ପ୍ରଶ୍ନ ଅନେକେ କରନ୍ତି । ମାତ୍ର ପ୍ରକୃତରେ ଏଠାରେ ପ୍ରତ୍ୟେକ ପ୍ରକାର ଶିକ୍ଷାକୁ ସମାନ ଗୁରୁତ୍ୱ ଦିଆଯାଇଛି, କୌଣସିଟାକୁ ବେଶୀ ଗୁରୁତ୍ୱ ଦିଆଯାଇଛି ବୋଲି କୁହାଯାଇ ନ ପାରେ । କିନ୍ତୁ ଶାରୀରିକ ଶିକ୍ଷା ଦୃଶ୍ୟ ବସ୍ତୁ ହୋଇ-ଥିବାରୁ ତାହା ହଠାତ୍ ଦୃଷ୍ଟି ଆକର୍ଷଣ କରେ । ଦ୍ୱିତୀୟତଃ ପୂର୍ଣ୍ଣାଙ୍ଗ ଅଧ୍ୟାତ୍ମ-ଜୀବନ ଓ ଯୋଗ-ସାଧନାର ଏକ ବିଶିଷ୍ଟ ଅଙ୍ଗ ହେଲା ଶରୀରର ଶ୍ରୀବୃଦ୍ଧି-ସାଧନ,—ତାକୁ ସୁସ୍ଥ, ସବଳ ଏବଂ ନମନୀୟ କରି ରଖିବା । ଏହା ଶ୍ରୀଅରବିନ୍ଦଙ୍କ ଜୀବନ-ଦର୍ଶନର ଏକ ଅପରିହାର୍ଯ୍ୟ ଅଙ୍ଗ ଏବଂ ଏହାକୁ ଅବହେଳା କରିବା ଉଚିତ ନୁହେଁ, ସମ୍ଭବ ବି ନୁହେଁ—ଶରୀରର ପୂର୍ଣ୍ଣତା ଓ ଦିବ୍ୟ ପରିଣାମ ସମ୍ବନ୍ଧରେ ଶ୍ରୀଅରବିନ୍ଦ ଲେଖିଛନ୍ତି : "The physical consciousness and physical being, the body itself must reach a perfection in all that it is, and does which now we can hardly conceive. It may even in the end be suffused with a light and beauty and bliss from the beyond and the life divine assume a body divine." ଅର୍ଥାତ୍, "ଶାରୀରିକ ଚେତନା, ଶାରୀରିକ ସତ୍ତା ଓ ସ୍ୱୟଂ ଶରୀର ତାହାର ମୂଳ ସ୍ୱରୂପରେ ଓ କ୍ରିୟାବଳୀରେ ଏପରି ଏକ ପୂର୍ଣ୍ଣତା ପ୍ରାପ୍ତ ହେବ ଯାହା ବର୍ତ୍ତମାନ ଆମ୍ଭମାନଙ୍କ ପକ୍ଷରେ ଧାରଣା କରିବା ଅସମ୍ଭବ । ହୁଏତ ପରିଶେଷରେ ଊର୍ଦ୍ଧ୍ୱରୁ ଆଗତ ଏକ ଆଲୋକ, ସୌନ୍ଦର୍ଯ୍ୟ ଓ ଆନନ୍ଦଦ୍ୱାରା ଏହା ପ୍ଳାବିତ ହେବ ଏବଂ ଦିବ୍ୟ-ଜୀବନ ଏକ ଦିବ୍ୟ-ଶରୀର ଧାରଣ କରିବ ।"....ସୁତରାଂ ଦିବ୍ୟ-ଜୀବନ ଶରୀରର ଆମୂଳ ରୂପାନ୍ତର ଓ ତାହାର ଦିବ୍ୟ-ପରିଣାମ ଉପରେ ନିର୍ଭର କରୁଛି । ସେଥିପାଇଁ ଶିକ୍ଷା-କେନ୍ଦ୍ରର କେବଳ ଛାତ୍ରଛାତ୍ରୀ ନୁହନ୍ତି, ବରଂ ଆଶ୍ରମର ପ୍ରତ୍ୟେକ ସକ୍ଷମ ବ୍ୟକ୍ତି ଶାରୀରିକ ଚର୍ଚ୍ଚାରେ ଭାଗ ନିଅନ୍ତି ଏବଂ ଏହାକୁ ଯୋଗ-ସାଧନାର ଏକ ବିଶିଷ୍ଟ ଅଙ୍ଗ ବୋଲି ସ୍ୱୀକାର କରନ୍ତି ।

ଶାରୀରିକ ଶିକ୍ଷାର ପରିଚାଳନା, ସଂଗଠନ ଓ ନିୟନ୍ତ୍ରଣର ଭାର ଜଣେ ଡିରେକ୍‌ଟରଙ୍କ ହସ୍ତରେ ନ୍ୟସ୍ତ ରହିଛି । ଏହି ଡିରେକ୍‌ଟରଙ୍କ (ଶ୍ରୀ ପ୍ରଣବକୁମାର

ଭଟ୍ଟାଚାର୍ଯ୍ୟ ୩୭।୩୮ ବର୍ଷ) ଯୁବ-ସୁଲଭ କର୍ମ ନିପୁଣତା, ଅସାଧାରଣ ନିଷ୍ଠା, ଐକାନ୍ତିକତା, ସଂଗଠନ ପ୍ରତିଭା ଏବଂ ଶାରୀରିକ ଶିକ୍ଷା ସମ୍ବନ୍ଧରେ ଗଭୀର ଜ୍ଞାନ ଦେଖିଲେ ଯେକୌଣସି ବ୍ୟକ୍ତି ଚମତ୍କୃତ ହେବ । ଗତ ୧୩।୧୪ ବର୍ଷ ଧରି ଏହି ଅନୁଷ୍ଠାନକୁ ଏକ ବିରାଟ, ବିଶାଳ ଏବଂ ସୁସଂହତ ସଂସ୍ଥାରୂପେ ସେ ଶ୍ରୀମା'ଙ୍କ ପରିଚାଳନାରେ ରହି ଗଠନ କରି ପାରିଛନ୍ତି । ଏହି ବିଭାଗରେ ପ୍ରାୟ ୩୮ ଜଣ କ୍ୟାପ୍‌ଟେନ୍ ଏବଂ ୮ ଜଣ ଇନଷ୍ଟ୍ରକ୍‌ଟର ରହିଛନ୍ତି ।

ସମଗ୍ର ଆଶ୍ରମ ଓ ଶିକ୍ଷା-କେନ୍ଦ୍ରର ଯଥାକ୍ରମେ ସାଧକ ସାଧିକା ଓ ଛାତ୍ର-ଛାତ୍ରୀମାନଙ୍କୁ ଶାରୀରିକ ଶିକ୍ଷାର ସୁବ୍ୟବସ୍ଥା ନିମିତ୍ତ ବୟସ, ସାମର୍ଥ୍ୟ, ଗ୍ରହଣ-ଶୀଳତା ଓ ମାନସିକ ବିକାଶାନୁଯାୟୀ ବିଭିନ୍ନ ଗ୍ରୁପ୍‌ରେ ବିଭକ୍ତ କରାଯାଇଛି । ପ୍ରତ୍ୟେକ ଗ୍ରୁପ୍‌ର କ୍ୟାପଟେନ୍ ଓ ଇନ୍‌ଷ୍ଟ୍ରକ୍‌ଟର ମଧ୍ୟ ଅଛନ୍ତି । ନିମ୍ନଲିଖିତମତେ ବିଭିନ୍ନ ଗ୍ରୁପ୍ ସଂଗଠନ କରାଯାଇଛି ।

ଗ୍ରୁପ୍ 'ଏ' (Group A) :—ବୟସ୬-୧୫ ବାଳକ ଓ ବାଳିକା । ପୋଷାକ—ସବୁଜ ହାଫ୍‌ପ୍ୟାଣ୍ଟ ଓ ଧଳା ହାଫସାର୍ଟ ବା ଗଞ୍ଜି ଏହି ଗ୍ରୁପ୍ ମଧ୍ୟରେ ବି ଅନେକ ଉପବିଭାଗ ଅଛି ଯଥା—A1, A2, A3, A4, A5, ଏହି ପ୍ରତ୍ୟେକ ଉପବିଭାଗଗୁଡ଼ିକରେ ଖେଳର ବ୍ୟବସ୍ଥା ଓ ଅଙ୍ଗଚାଳନା ଆଦି ଭିନ୍ନ ଭିନ୍ନ ପ୍ରକାରର ରହିଛି । ଶିଶୁମାନଙ୍କର ଖେଳ, କୌତୁକ ଓ ଶୃଙ୍ଖଳା ଶିକ୍ଷା ଏହି ବିଭିନ୍ନ ପ୍ରକାର ଚିତ୍ତରଞ୍ଜକ ବ୍ୟାୟାମ ମଧ୍ୟରେ ଅତି ସ୍ୱତନ୍ତ୍ରଭାବେ ରଖାଯାଇଛି ।

ଗ୍ରୁପ୍ 'ବି' (Group B) :—ବୟସ ୧୬-୧୯, ବାଳକ ଓ ବାଳିକା । ପୋଷାକ—ଲାଲ ହାଫ୍‌ପ୍ୟାଣ୍ଟ ଓ ଧଳା ହାଫ୍‌ସାର୍ଟ ବା ଗଞ୍ଜି ।

ଗ୍ରୁପ୍ 'ସି' (Group C) :—ବୟସ ୨୦-୨୫ କେବଳ ବାଳିକା ।
ପୋଷାକ—ଧଳା ହ୍ୟାଫ୍‌ପେଣ୍ଟ ଓ ବ୍ଲୁ-କୋଲର ହ୍ୟାଫ୍‌ସାର୍ଟ ।

ଗ୍ରୁପ୍ 'ଡି' (Group D) :—ବୟସ ୨୦-୨୫ କେବଳ ବାଳକ
ପୋଷାକ—ଧୂସର ହ୍ୟାଫ୍‌ପେଣ୍ଟ ଧଳା ହ୍ୟାଫ୍‌ସାର୍ଟ ବା ଗଞ୍ଜି ।

ଗ୍ରୁପ୍ 'ଇ' (Group E) :—ବୟସ ୨୬-୪୦ କେବଳ ମହିଳା ।
ପୋଷାକ—ଧଳା ହ୍ୟାଫ୍‌ପେଣ୍ଟ ଓ ଫିକା ନାଲି କୋଲର ହ୍ୟାଫ୍‌ସାର୍ଟ ।

ଗ୍ରୁପ୍ 'ଏଫ୍' (Group F) :—ବୟସ ୨୬-୪୦ କେବଳ ପୁରୁଷ ।
ପୋଷାକ—ଖାକି ହ୍ୟାଫ୍‌ପେଣ୍ଟ ଓ ଧଳା ହ୍ୟାଫ୍‌ସାର୍ଟ ବା ଗଞ୍ଜି ।

ଗ୍ରୁପ୍ 'ଜି' (Group G) :—୪୦ ବର୍ଷରୁ ଊର୍ଦ୍ଧ୍ୱ କେବଳ ମହିଳା ।
ପୋଷାକ—ଧଳା ହାଫ୍‌ପେଣ୍ଟ ଓ ଧଳା ହ୍ୟାଫ୍‌ସାର୍ଟ ।

ଗ୍ରୁପ୍ 'ଏଚ୍' (Group H) :—୪୦ ବର୍ଷରୁ ଊର୍ଦ୍ଧ୍ୱ କେବଳ ପୁରୁଷ ।
ପୋଷାକ—ବ୍ଲୁ-ବ୍ଲାକ୍ ହ୍ୟାଫ୍‌ପେଣ୍ଟ ଓ ଧଳା ହ୍ୟାଫ୍‌ସାର୍ଟ ।

ଏହି ପ୍ରତ୍ୟେକ ଗ୍ରୁପ୍‌ର ନିୟମିତ ଓ ବିଭିନ୍ନ ପ୍ରକାର ଧାରା-ବାହିକଭାବେ ଶାରୀରିକ ଶିକ୍ଷାର ପ୍ରୋଗ୍ରାମ ରହିଛି । ସାଧକ ସାଧିକା ବା ଛାତ୍ରଛାତ୍ରୀମାନେ ଏହି ପ୍ରୋଗ୍ରାମ ଅନୁସାରେ ନିଜ ନିଜର ଶାରୀରିକ ଶିକ୍ଷାର ଧାରା ଅନୁସରଣ କରନ୍ତି ।

ଶାରୀରିକ ଶିକ୍ଷାର ବ୍ୟବସ୍ଥା :—

ଶାରୀରିକ ଶିକ୍ଷା ନିମିତ୍ତ ଆଶ୍ରମରେ ବିପୁଳ ବ୍ୟବସ୍ଥା ରହିଛି । ବିଭିନ୍ନ ପ୍ରକାର ଖେଳର ବ୍ୟବସ୍ଥା ନିମିତ୍ତ ଫିଲ୍‌ଡ୍ ଓ କୋର୍ଟର ବ୍ୟବସ୍ଥା ଅଛି ।

ଫୁଟ୍‌ବଲ୍, ଭଲିବଲ, ବ୍ୟାସ୍କେଟବଲ, ସଫ୍‌ଟ୍‌ବଲ, ଟେନିସ୍ ଇତ୍ୟାଦି ନିମିତ୍ତ ଏକାଧିକ କୋର୍ଟ ଓ ଫିଲ୍ଡର ବ୍ୟବସ୍ଥା ରହିଛି । କମ୍ବାଟିଭସ୍, ରେସଲିଂ, ବକ୍‌ସିଂ ଇତ୍ୟାଦି ନିମିତ୍ତ ତଦୁପଯୋଗୀ ବ୍ୟବସ୍ଥା ରହିଛି । ଅଲମ୍ପିକ୍, ପ୍ରତିଯୋଗିତା ବ୍ୟବସ୍ଥା ସହ ଆକ୍ୱାଟିକ୍‌ସ ବା ଜଳକ୍ରୀଡ଼ା ନିମିତ୍ତ ଏକ ଅତି ସୁନ୍ଦର ସଇମିଙ୍ଗପୁଲ ରହିଛି । ଆଥେଲଟିକ୍‌ସ ନିମିତ୍ତ ୪୦୦ ମିଟର ଟ୍ରାକ୍‌ସହ ଜମ୍ପ, ଭଲଟିଙ୍ଗ ଓ ଥ୍ରୋ, ନିମିତ୍ତ ବ୍ୟବସ୍ଥା ଅଛି । ଜିମ୍ନାଷ୍ଟିକ ମାର୍ଚ୍ଚିଙ୍ଗ୍ ତଥା, ମାସ୍‌ଡ୍ରିଲ ନିମିତ୍ତ ବ୍ୟବସ୍ଥା ମଧ୍ୟ ଅଛି । ଦୁଇଟି ଜିମ୍ନାସିୟମ ହଲ୍ ଅଛି, ଜାପାନୀ ପ୍ରଣାଳୀର କୁସ୍ତି 'ଜୁଡ୍ରୋ' ନିମିତ୍ତ ସ୍ୱତନ୍ତ୍ର ଘରର ବନ୍ଦୋବସ୍ତ ଅଛି । ଯୌଗିକ 'ଆସନ' ମଧ୍ୟ କେତେକ ବ୍ୟକ୍ତ କରନ୍ତି । ଏଥି ନିମିତ୍ତ ସୁଦକ୍ଷ ଶିକ୍ଷକ ଅଛନ୍ତି ।

ଏହା ସଙ୍ଗେ ସଙ୍ଗେ ଶାରୀରିକ ଶିକ୍ଷା ନିମିତ୍ତ ଏକ ବିଶାଳ ଲାଇବ୍ରେରୀ ରହିଛି ପ୍ରାୟ ୨୫୦୦ ପୁସ୍ତକ କେବଳ ଶାରୀରିକ ଶିକ୍ଷା ସମ୍ବନ୍ଧରେ ରକ୍ଷିତ ଅଛି । ସ୍ୱାସ୍ଥ୍ୟ ଓ ଖେଳ ସମ୍ବନ୍ଧୀୟ ଚଳଚିତ୍ର ମଧ୍ୟ ଦେଖାଯାଏ । ଶିକ୍ଷାର୍ଥୀମାନଙ୍କୁ ଡାକ୍ତର ପ୍ରତ୍ୟେକ ବର୍ଷ ଥରେ ପରୀକ୍ଷା କରନ୍ତି । ଏହା ସଙ୍ଗେ ସଙ୍ଗେ ଏକ ଅତ୍ୟାଧୁନିକ ଧରଣର ମାଲିସ୍ କରିବାର ଡାକ୍ତରଖାନା (Massage Clinic) ରହିଛି । ଶାରୀରିକ ଅଙ୍ଗଭଙ୍ଗୀରେ ତ୍ରୁଟି ଥିଲେ ତାକୁ ଏହି ବିଭାଗରେ ସଜାଡ଼ି ଦିଆଯାଏ । ଏକ୍‌ସରେ (X' Ray) ବିଭାଗ ମଧ୍ୟ ରହିଛି ଏବଂ ବିଭିନ୍ନ ଧରଣର ପ୍ରାୟ ୧୫ ଜଣ ବିଖ୍ୟାତ ଓ ସୁଶିକ୍ଷିତ ଡାକ୍ତର ଅଛନ୍ତି ।

ସାଧାରଣ ବାର୍ଷିକ ପ୍ରୋଗ୍ରାମ :—

ନିୟମିତରୂପେ ବର୍ଷର ବିଭିନ୍ନ ସମୟରେ ଶାରୀରିକ ଶିକ୍ଷାର ବିଭିନ୍ନ କାର୍ଯ୍ୟକଳାପକୁ ସାଧାରଣତଃ ଏହି ପାଞ୍ଚୋଟି ବିଭାଗରେ ବିଭକ୍ତ କରାଯାଇଛି ।

୧. ଖେଳ (Games), ୨. କୁସ୍ତି କସରତ୍ (Combatives), ୩. ଜଳକ୍ରୀଡ଼ା (Acquatics), ୪. ଆଥ୍‌ଲେଟିକ୍‌ସ (Athletics) ଓ ୫. ଜିମ୍ନାଷ୍ଟିକ୍‌ସ (Gymnastics) ଏହି ପ୍ରତ୍ୟେକ ବିଭାଗରେ ଖୁବ୍ ସୁଦକ୍ଷ ଶିକ୍ଷକ ଓ ଇନ୍‌ଷ୍ଟ୍ରକ୍‌ଟର ଅଛନ୍ତି ଏବଂ ସେମାନଙ୍କର ତତ୍ତ୍ୱାବଧାନରେ ଏହି ବିଭିନ୍ନ ବିଭାଗର ଖେଳ ଅନୁଷ୍ଠିତ ହୁଏ, ଏଥିରେ ପ୍ରତିଯୋଗିତା ମଧ୍ୟ କରାଯାଏ । ଏଠାରେ ଯେଉଁସବୁ ପ୍ରତିଯୋଗିତା ହୁଏ ତାହାର ମୂଳ ଉଦ୍ଦେଶ୍ୟ ମଧ୍ୟ ଭିନ୍ନ । କେବଳ ପ୍ରାଇଜ୍ ପାଇବା ପାଇଁ ବା ପ୍ରତିଯୋଗିତା ନିମିତ୍ତ ପ୍ରତିଯୋଗିତା କରାଯାଏ ନାହିଁ । ସୁସ୍ଥ, ସବଳ, ସୁଦୃଢ଼ ସୁନ୍ଦର ଶରୀରର ଗଠନ ଏବଂ ନିୟମ, ଶୃଙ୍ଖଳାଜ୍ଞାନ, ଗୋଷ୍ଠି ବଦ୍ଧ ମନୋଭାବ ବୃଦ୍ଧି ନିମିତ୍ତ ଏହି ପ୍ରତିଯୋଗିତାଗୁଡ଼ିକ ଅନୁଷ୍ଠିତ ହୋଇଥାଏ । ଅନେକ ସମୟରେ ବିଭିନ୍ନ ପ୍ରକାର ପ୍ରତିଯୋଗିତାର ଆରମ୍ଭରେ ମା' ଏକ ବିଶେଷ ବାର୍ତ୍ତା ପଠାଇ ଥାଆନ୍ତି । ପ୍ରତିଯୋଗିତାରେ ଉତ୍ତୀର୍ଣ୍ଣ ହେଲେ ମା'ଙ୍କର ଆଶୀର୍ବାଦ ସୂଚକ ଦସ୍ତଖତ ଥିବା କାର୍ଡ଼ ମିଳେ ।

ଆଶ୍ରମର ବ୍ୟାୟାମ, ନାନାପ୍ରକାର ଖେଳ ଓ ଶାରୀରିକ ଚର୍ଚ୍ଚା ଏତେ ବ୍ୟାପକ ଯେ ଏ ସମ୍ବନ୍ଧରେ ବିଶେଷ ବିବରଣୀ ଦେବା ଅସମ୍ଭବ । ଏ ସମ୍ବନ୍ଧରେ ଅନୁସନ୍ଧିତ୍ସୁ ପାଠକ 'ନବଜ୍ୟୋତି'ର ୪ର୍ଥ ବର୍ଷର ୧ମ ସଂଖ୍ୟାଠାରୁ ୪ର୍ଥ ସଂଖ୍ୟା ପର୍ଯ୍ୟନ୍ତ ଶାରୀରିକ ଶିକ୍ଷା ସମ୍ବନ୍ଧୀୟ ପ୍ରବନ୍ଧଗୁଡ଼ିକ ପାଠ କରିପାରନ୍ତି । ଶେଷରେ ଶ୍ରୀମା'ଙ୍କର ଏକ ବିଶେଷ ବାଣୀ ଏ ସମ୍ବନ୍ଧରେ ଉଦ୍ଧାର କରୁଛି : "ତୁମ ମଧ୍ୟରେ ପୂର୍ଣ୍ଣ ସମନ୍ୱୟ ଓ ସୁସଂଗତି ସ୍ଥାପନ କର, ଯଦ୍ୱାରା ଯଥା ସମୟରେ ତୁମ ଶରୀର ମଧ୍ୟଦେଇ 'ପୂର୍ଣ୍ଣ ସୌନ୍ଦର୍ଯ୍ୟ' ପ୍ରକାଶିତ ହୋଇପାରିବ ।" ("Build in yourself the total harmony, so that, when the

time comes 'Perfect beauty' can express itself through your body.")

## ପ୍ରାଣିକ ଶିକ୍ଷାର ବାତାବରଣ

ପ୍ରାଣିକ ଶିକ୍ଷାର ପ୍ରଧାନ ବିଷୟ ହେଲ ଚରିତ୍ର-ଗଠନ । ପ୍ରାଣଶକ୍ତି ସାଧାରଣତଃ, ଦୁର୍ଦ୍ଦାନ୍ତ ଓ ଅଶୁଦ୍ଧ । ଏହାର ଯଥାଯଥ ନିୟନ୍ତ୍ରଣ, ପରିଚାଳନା ଓ ଶାସନ ଏକ ଦୁରୂହ ବ୍ୟାପାର । ପ୍ରାଣିକ ଶିକ୍ଷାର ସ୍ଥୂଳତଃ ଦୁଇଟି ଦିଗ ଅଛି : ପ୍ରଥମତଃ ଇନ୍ଦ୍ରିୟମାନଙ୍କର ଯଥାଯଥ ଅନୁଶୀଳନ, ସଂଶୋଧନ ଓ ପ୍ରୟୋଗ, ଦ୍ୱିତୀୟତଃ ଆତ୍ମ-ଚେତନାର ବିଶ୍ଳେଷଣ ଓ ଉନ୍ମୟନଦ୍ୱାରା ନିଜ ଉପରେ କର୍ତ୍ତୃତ୍ୱ ପ୍ରତିଷ୍ଠା ଓ ଶେଷରେ ଦିବ୍ୟ ଭାଗବତ ଜ୍ୟୋତିଦ୍ୱାରା ପ୍ରକୃତିର ରୂପାନ୍ତର । ଏ ବିଷୟ ପୂର୍ବରୁ ବର୍ଣ୍ଣିତ ହୋଇଅଛି ।

ଶିକ୍ଷାକେନ୍ଦ୍ରରେ ପ୍ରାଣିକ ଶିକ୍ଷା ନିମିତ୍ତ ଏକ ସୁସ୍ଥ ଓ ରୁଚିକର ପରିବେଶ ସୃଷ୍ଟି ହୋଇପାରିଛି । ଶିଶୁର ଇନ୍ଦ୍ରିୟଗୁଡ଼ିକର ଯଥାର୍ଥ ସଂଚାଳନା, ପରିପୁଷ୍ଟି, ଅନୁଶୀଳନ ଓ ରୁଚିବୋଧ ତଥା ସୌନ୍ଦର୍ଯ୍ୟବୋଧର ବିସ୍ତୃତ ପରିସର ରହିଛି । କଠୋରତା, କୁତ୍ସି-ତତା, ବିକୃତ ଓ ପାଶବିକ ଦୁର୍ଦ୍ଦାନ୍ତ ଭାବ ଓ ଅପବିତ୍ରତା ବା ନିମ୍ନ ପ୍ରାଣର ଦୁର୍ମତିପରାୟଣତା ଶିକ୍ଷାକେନ୍ଦ୍ର ବା ଆଶ୍ରମର ସାଧାରଣ ବାୟୁମଣ୍ଡଳ ମଧ୍ୟରେ ଦେଖିବା ଏକାନ୍ତ ବିରଳ । ବାଲ୍ୟକାଳରୁ ଶିଶୁମାନେ ପବିତ୍ର, ଶୁଦ୍ଧ ଓ ସତ୍ତ୍ୱପରାୟଣ ବ୍ୟକ୍ତି ସମ୍ମୁଖରେ ଦେଖି ସେହି ଉଦାହରଣଦ୍ୱାରା ବିଶେଷରୂପେ ପ୍ରଭାବିତ ହୁଅନ୍ତି । ପୁନଶ୍ଚ ଏଠାରେ ଗୁରୁମାନଙ୍କୁ ନାନା ପ୍ରକାର କ୍ରୀଡ଼ାକୌତୁକ ଓ କସରତ ମଧ୍ୟରେ ନେତୃତ୍ୱର ଭାର ଦେଇ ସେମାନଙ୍କର ଶକ୍ତି, ସାମର୍ଥ୍ୟ, ବୀରତ୍ୱ ଓ ସାହସିକତାର ବିକାଶ ନିମିତ୍ତ ସୁଯୋଗ ଦିଆଯାଏ

ଏଠାରେ ଛାତ୍ରମାନଙ୍କର ସ୍ପଷ୍ଟବାଦୀତା ଓ ସରଳତା ଦେଖିଲେ ବିସ୍ମିତ ହେବାକୁ ହୁଏ । ଏହିସବୁ ସଙ୍ଗେ ସୂକ୍ଷ୍ମକଳାର ଅନୁଶୀଳନ-ଦ୍ୱାରା ପ୍ରାଣର ବିଭିନ୍ନ ବୃତ୍ତିର ପରିଚାଳନା କରାଯାଏ । ସଙ୍ଗୀତ, କଳା, ନୃତ୍ୟବିଦ୍ୟା, ଚିତ୍ରାଙ୍କନ, ଫଟୋଗ୍ରାଫି ଓ ଖନନ ଶିଳ୍ପ ଇତ୍ୟାଦି ବହୁବିଧ ବ୍ୟବସ୍ଥା ବିଶିଷ୍ଟ ଶିଳ୍ପୀ ଓ କାରିଗରଙ୍କ ତତ୍ତ୍ୱାବଧାନରେ କରାଯାଇଥାଏ । ସାମୟିକରୂପେ ବିଭିନ୍ନ କଳାର ପ୍ରଦର୍ଶନୀ ଓ ସାଧାରଣ ଅନୁଷ୍ଠାନମାନ କରାଇ ଛାତ୍ରମାନଙ୍କର ସୃଜନୀ-ପ୍ରତିଭାକୁ ଖୁବ୍ ମାର୍ଜିତ, ଶୁଦ୍ଧ ଓ ଉନ୍ନତ କରାଯାଇଥାଏ । ଶିକ୍ଷାକେନ୍ଦ୍ରର ବାର୍ଷିକ ନାଟକୋତ୍ସବ ପ୍ରତିବର୍ଷ ଡିସେମ୍ବର ପହିଲା ତାରିଖରେ ହୁଏ ଏବଂ ଏହା ଏକ ଉନ୍ନତ ଓ ମାର୍ଜିତ ରୁଚିସମ୍ପନ୍ନ ଉନ୍ନତ କଳାର ଅନୁଷ୍ଠାନ ।

ପ୍ରାଣିକ ଶିକ୍ଷାର ଏଠାରେ କୌଣସି ବାହ୍ୟ ନିୟମନ ନାହିଁ । କିନ୍ତୁ ଛାତ୍ରଛାତ୍ରୀମାନଙ୍କର ପ୍ରାଣର ପରିଶୁଦ୍ଧି, ସ୍ୱଭାବର ଅଭିନବ ନିୟନ୍ତ୍ରଣ ଓ ପରିଚାଳନା ଦେଖିଲେ କୌଣସି ଏକ ଜ୍ୟୋତିର୍ମୟ ଦିବ୍ୟ-ବିଧାନରେ ଅବଶ୍ୟ ବିଶ୍ୱାସ କରିବାକୁ ହୁଏ । ପ୍ରାୟ ସମସ୍ତ ଛାତ୍ର ପାନ, ବିଡ଼ି, ସିଗାରେଟ ଖାଆନ୍ତି ନାହିଁ ବା ବାହାରେ ସିନେମା ଇତ୍ୟାଦି ଦେଖନ୍ତି ନାହିଁ । ସେମାନଙ୍କ ଜୀବନ-ଯାପନର ପ୍ରଣାଳୀ ଖୁବ୍ ସରଳ ଓ ନିର୍ମଳ । ଶିକ୍ଷାକେନ୍ଦ୍ରରେ ଛାତ୍ରମାନଙ୍କର ଶୃଙ୍ଖଳାଜ୍ଞାନ ଶତକଡ଼ା ଏକଶହ କହିଲେ ଚଳେ । ବାହାର ଦର୍ଶକମାନେ ଏହା ଦେଖି ବିସ୍ମୟାଭିଭୂତ ହୁଅନ୍ତି ।

## ମାନସିକ ଶିକ୍ଷାର କାର୍ଯ୍ୟକ୍ରମ

ମାନସିକ ଶିକ୍ଷାର କାର୍ଯ୍ୟକ୍ରମ ବିଷୟରେ ପୂର୍ବରୁ ବିସ୍ତୃତରୂପେ ବର୍ଣ୍ଣନା କରାଯାଇଛି । ଏଠାରେ ତାହାର ପୁନରାବୃତ୍ତି କରିବା ଆବଶ୍ୟକତା ନାହିଁ ।

ଏତିକ କହିଲେ ଯଥେଷ୍ଟ ହେବ ଯେ ମାନସିକ ଶିକ୍ଷାର ଯେଉଁ ଚରମ ଲକ୍ଷ୍ୟ ଅର୍ଥାତ୍ ମନର ବିକାଶ ଓ ନିୟନ୍ତ୍ରଣ ତାହା ଆଶ୍ରମ ଶିକ୍ଷାକେନ୍ଦ୍ର ଦ୍ୱାରା ଯଥାର୍ଥଭାବେ ସାଧିତ ହୁଏ । ବହୁ ଛାତ୍ର-ଛାତ୍ରୀଙ୍କର ମନ ଏକ ପ୍ରକାର ସୃଷ୍ଟି ବୃତ୍ତିଦ୍ୱାରା ଗଠିତ ବୋଲି ସେମାନଙ୍କର ବିଭିନ୍ନ ରଚନାବଳୀ ଓ ସାଂସ୍କୃତିକ ଅନୁଷ୍ଠାନରୁ ବୁଝିହୁଏ । ଅନେକ ଛାତ୍ରଛାତ୍ରୀ ବିଭିନ୍ନ ଭାଷାରେ ବେଶ୍ ପାରଙ୍ଗମ । ପାଶ୍ଚାତ୍ୟ ଭାଷା ମଧ୍ୟରେ ଏଠାରେ ଇଂରେଜୀ, ଫ୍ରେଞ୍ଚ, ଜର୍ମାନୀ, ସ୍ପାନିସ୍, ଇଟାଲିୟାନ୍, ଲାଟିନ୍, ଗ୍ରୀକ୍ ଭାଷା ଓ ଭାରତୀୟ ଭାଷାମାନଙ୍କ ମଧ୍ୟରେ ହିନ୍ଦୀ, ବଙ୍ଗଳା, ତାମିଲ୍, ତେଲୁଗୁ, ଗୁଜୁରାଟି, କାନ୍ନାଡ଼ା, ମରହଟ୍ଟୀ ଭାଷାରେ ଶିକ୍ଷାର ବ୍ୟବସ୍ଥା ରହିଛି । ବିଭିନ୍ନ ଭାଷାରେ ଆଶ୍ରମ ପ୍ରେସ୍‌ରୁ ବହୁତ ଗୁଡ଼ିଏ ଦର୍ଶନ ଓ ଯୋଗ-ସମ୍ବନ୍ଧୀୟ ତ୍ରୈମାସିକ ପତ୍ରପତ୍ରିକା ପ୍ରକାଶିତ ହୁଏ । ହିନ୍ଦୀରେ "ଅଦିତି", ବଙ୍ଗଳାରେ "ବର୍ତ୍ତିକା", ଗୁଜୁରାଟିରେ "ଦକ୍ଷିଣା", ମରହଟ୍ଟୀରେ "ସଞ୍ଜୀବନ", କାନ୍ନାଡ଼ାରେ "ଦୀପ୍ତି", ଓଡ଼ିଆରେ "ନବଜ୍ୟୋତି", ଓ ଶ୍ରୀଅରବିନ୍ଦ 'ଲୋକ-ସାହିତ୍ୟ' (ମାସିକ), ତେଲୁଗୁରେ "ଅର୍କ", ଓ ଇଂରାଜୀରେ "Mother India"(ମାସିକ), "Advent"(ତ୍ରୈମାସିକ) ଓ Bulletin of Sri Aurobindo International Centre of Education" (ତ୍ରୈମାସିକ) ପ୍ରକାଶିତ ହୁଏ । ଏହାଛଡ଼ା ଆଶ୍ରମ ଶିକ୍ଷାକେନ୍ଦ୍ରର ଗ୍ରନ୍ଥାଗାର ଏକ ବିଶିଷ୍ଟ ଦର୍ଶନୀୟ ବସ୍ତୁ । ଏଠାରେ ପ୍ରାୟ ଚାଳିଶ ହଜାରରୁ ଊର୍ଦ୍ଧ୍ୱ ପୁସ୍ତକ ସଞ୍ଚିତ ଅଛି । ଦେଶ ବିଦେଶରୁ ପ୍ରାୟ ତିନିଶହ ପାକ୍ଷିକ, ମାସିକ ଓ ତ୍ରୈମାସିକ ପତ୍ରପତ୍ରିକା ଗ୍ରନ୍ଥାଗାରକୁ ଉପହାରରୂପେ ଆସିଥାଏ ।

# ଚୈତ୍ୟ ଓ ଆଧ୍ୟାତ୍ମିକ ଶିକ୍ଷାର ବିଧାନ

ଏ ବିଷୟରେ ଅନ୍ୟତ୍ର ବିଶେଷରୂପେ ଆଲୋଚନା ହୋଇଛି । ଚୈତ୍ୟ ଓ ଆଧ୍ୟାତ୍ମିକ ଶିକ୍ଷା ଏଠାରେ ସୂକ୍ଷ୍ମ ଭାବରେ, ଅଜ୍ଞାତରେ ପରିଚାଳିତ ହୁଏ । ଚୈତ୍ୟ ଶିକ୍ଷା ପ୍ରଧାନତଃ ତିନୋଟି ବସ୍ତୁଦ୍ୱାରା ଏଠାରେ ସାଧିତ ହୁଏ : ପ୍ରଥମତଃ ଶ୍ରୀଅରବିନ୍ଦ ଓ ଶ୍ରୀମା'ଙ୍କ ଉପସ୍ଥିତି (Presence) ଓ ଦିବ୍ୟ-ଅତିମାନସ ଶକ୍ତିର କ୍ରିୟା, ଦ୍ୱିତୀୟତଃ ସାଧକମାନଙ୍କର ଶୁଦ୍ଧ ଓ ନିର୍ମଳ ଆଚରଣ ଓ ଉଦାହରଣ ତୃତୀୟତଃ ପ୍ରଶାନ୍ତ, ସ୍ନିଗ୍ଧ, ଆନନ୍ଦମୟ ଆଧ୍ୟାତ୍ମିକ ବାୟୁମଣ୍ଡଳ । ପ୍ରକାଶ୍ୟରେ ପ୍ରତ୍ୟେକ କର୍ମ ମଧ୍ୟରେ ଛାତ୍ରମାନେ ନିଜର ଶକ୍ତି, ସାମର୍ଥ୍ୟ ଓ ଚେତନାକୁ ମା'ଙ୍କ ଚରଣରେ ଜୀବନ୍ତରୂପେ ସମର୍ପଣ କରିବାକୁ ଏକ ଆନ୍ତର ଇଙ୍ଗିତଦ୍ୱାରା ବୁଝିପାରନ୍ତି । ଏହାଛଡ଼ା ବିଭିନ୍ନ ସମୟରେ ଅନୁଷ୍ଠିତ ନୀରବ ଧ୍ୟାନ ଓ ପ୍ରାର୍ଥନା ମଧ୍ୟ ଛାତ୍ରମାନଙ୍କୁ ବହୁଭାବରେ ପ୍ରଭାବିତ କରେ । ପୁନଶ୍ଚ ଶିକ୍ଷାକେନ୍ଦ୍ରରେ ଶ୍ରୀଅରବିନ୍ଦଙ୍କ ଯୋଗ ଓ ଦର୍ଶନର ବିଭିନ୍ନ ଗ୍ରନ୍ଥମାନ ଓ ତତ୍ତ୍ୱସମ୍ବନ୍ଧୀୟ ଆଲୋଚନା ଛାତ୍ରମାନଙ୍କୁ ବିଶେଷ ପ୍ରଭାବିତ କରିଥାଏ । ପରିଶେଷରେ ମା'ଙ୍କର କେତେକ କ୍ଷେତ୍ରରେ ଛାତ୍ରଛାତ୍ରୀମାନଙ୍କୁ ଲିଖିତ ନିର୍ଦ୍ଦେଶ ଓ ପରିଚାଳନା ମଧ୍ୟ ଥାଏ । କହିବା ବାହୁଲ୍ୟ ଯେ ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କର ଚେତନା ସହିତ ମା'ଙ୍କର ଏକ ଅଭିନ୍ନ ସମ୍ବନ୍ଧ ସ୍ଥାପିତ ହୋଇଥାଏ । ଏ ସମ୍ବନ୍ଧରେ ଛାତ୍ରମାନେ ଶ୍ରୀମା'ଙ୍କ ଲିଖିତ "ଶିକ୍ଷା" ପୁସ୍ତକରୁ ଚୈତ୍ୟ ଓ ଆଧ୍ୟାତ୍ମିକ ଶିକ୍ଷା ସମ୍ବନ୍ଧୀୟ ଅଧ୍ୟାୟଟି ପାଠକଲେ ବିଶେଷ ଉପକୃତ ହେବେ ।

# ଶିକ୍ଷକ ଓ ଛାତ୍ର

ବର୍ତ୍ତମାନ ଆମ୍ଭେମାନେ ଶିକ୍ଷକଙ୍କର ଆଦର୍ଶ ତଥା ସେମାନଙ୍କ ପ୍ରତି ଶ୍ରୀମା'ଙ୍କ ନିର୍ଦ୍ଦେଶ ଓ ଗୁରୁ-ଶିକ୍ଷକ ସମ୍ପର୍କ ସମ୍ବନ୍ଧରେ ସାମାନ୍ୟ ଆଲୋଚନା କରି ପ୍ରବନ୍ଧଟି ସମାପ୍ତ କରିବା ।

ଶିକ୍ଷାକେନ୍ଦ୍ରର ପ୍ରତ୍ୟେକ ଶିକ୍ଷକ ଓ ଅଧ୍ୟାପକ ଆଶ୍ରମର ସାଧକ । ସେମାନେ ପୂର୍ଣ୍ଣାଙ୍ଗ ଯୋଗ-ଜୀବନର ଆଦର୍ଶ ଗ୍ରହଣ କରିଛନ୍ତି ଏବଂ ଅଧ୍ୟାତ୍ମ ସାଧନା ଓ ଆତ୍ମୋନ୍ନତି ଓ ପୂର୍ଣ୍ଣତା ପ୍ରାପ୍ତ କରିବା ନିମିତ୍ତ ଅଭୀପ୍‌ସା ରଖି କାର୍ଯ୍ୟ କରନ୍ତି । ଏଠାରେ ଶିକ୍ଷାଦାନ କ୍ଷେତ୍ରରେ ଶିକ୍ଷକର ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ରହିଛି ଏବଂ ଶିକ୍ଷା-ଦାନର ବିଧି ମଧ୍ୟ ସେ ନିଜେ ନିଜେ ତିଆରି କରନ୍ତି । ଏଠାରେ ଶିକ୍ଷକର ଦାୟିତ୍ୱ ଖୁବ୍ ବେଶୀ, କାରଣ କୌଣସି ବିଶିଷ୍ଟ ଶିକ୍ଷା-ପଦ୍ଧତିର ସଫଳତା ଶିକ୍ଷକର ବ୍ୟକ୍ତିତ୍ୱ, ସାଧନା ଓ ସିଦ୍ଧି ଉପରେ ନିର୍ଭର କରେ । ଶିକ୍ଷା କ୍ଷେତ୍ରରେ, କ୍ଲାସ୍ ରୁମ୍‌ରେ, ଏପରି କି ବାହାରେ ଶିକ୍ଷକ ଜଣେ ଆଦର୍ଶ ସ୍ୱାମାଧ୍ୟ ବ୍ୟକ୍ତି, ଜଣେ ଯୋଗୀ ଓ ସାଧୁ । ଏହି ମର୍ମରେ ଶ୍ରୀମା ଶିକ୍ଷକମାନଙ୍କ ନିମିତ୍ତ ଏକ ବାଣୀରେ କହିଛନ୍ତି :

"You must be a saint, a hero in order to be a good teacher. You must be a Yogi to be a good teacher. You must yourself have always the perfect attitude, if you demand from your students a perfect attitude. You cannot ask of any person a thing which you cannot do yourself."

ଅର୍ଥାତ୍, ତୁମକୁ ଜଣେ ଉତ୍ତମ ଶିକ୍ଷକ ହେବାକୁ ହେଲେ, ତୁମକୁ ଜଣେ ବୀର ଓ ସାଧୁ ହେବାକୁ ହେବ । ଯଥାର୍ଥ ଶିକ୍ଷକ

ହେବାକୁ ହେଲେ ହେବାକୁ ହେବ ଜଣେ ମହାନ୍ ଯୋଗୀ । ତୁମକୁ ଗ୍ରହଣ କରିବାକୁ ପଡ଼ିବ ସେହି ଯଥାର୍ଥ ଭାବ, ଯଦି ତୁମେ ଛାତ୍ର-ମାନଙ୍କଠାରୁ ସେହି ଯଥାର୍ଥ ମନୋଭାବ ଆଶାକର । ତୁମେ ନିଜେ ଯାହା କରିପାର ନାହିଁ, ତାହା ଅନ୍ୟକୁ କରିବାକୁ କେବେ ବି କହିପାରିବ ନାହିଁ ।" ଅନ୍ୟ ପ୍ରସଙ୍ଗରେ ଶ୍ରୀମା ଶିକ୍ଷକମାନଙ୍କୁ ଏକ ବିଶେଷ ବାର୍ତ୍ତାରେ ଅତିମାନସ-ଶିକ୍ଷା ପ୍ରବର୍ତ୍ତନର ବୈଶିଷ୍ଟ୍ୟ ପ୍ରତି ଦୃଷ୍ଟି ଆକର୍ଷଣ କରିଛନ୍ତି, "And to be worthy of a teaching according to the Supramental Truth given us by Sri Aurobindo, there should be no longer any ego." "ଶ୍ରୀଅରବିନ୍ଦ ଯେଉଁ ଅତିମାନସ ସତ୍ୟ ଆମ୍ଭମାନଙ୍କ ନିମିତ୍ତ ଦେଇ ଯାଇ-ଅଛନ୍ତି, ସେହି ଧାରାରେ ଶିକ୍ଷାଦେବାକୁ ଯୋଗ୍ୟ ହେବାକୁ ହେଲେ ସମ୍ପୂର୍ଣ୍ଣରୂପେ ଅହଂଶୂନ୍ୟ ହେବା ଉଚିତ୍ ।" ଏହି ଆଦର୍ଶ ଯେ ମାନବ-ଜୀବନର ଚରମ ରୂପାନ୍ତରର ସୂଚନା କରେ ଏଥିରେ ସନ୍ଦେହ ନାହିଁ ।

ଶିକ୍ଷକ ଓ ଛାତ୍ର ମଧ୍ୟରେ ଏଠାରେ ଏକ ପ୍ରକାର ଆତ୍ମିକ ଓ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ଥାଏ । ଶିକ୍ଷକମାନେ କୌଣସି କ୍ଷେତ୍ରରେ ଛାତ୍ରକୁ ଗାଳିଦେବା, ବିରକ୍ତି ପ୍ରକାଶ କରିବା ବା ସେହିପରି କିଛି ଖରାପ ବ୍ୟବହାର ଦେଖାନ୍ତି ନାହିଁ । କ୍ଲାସ୍ ରୁମ୍‌ରେ ମଧ୍ୟ ଶିକ୍ଷକ କୌଣସି ପ୍ରକାର ରାଗ, ଦ୍ୱେଷ, କ୍ରୋଧ ବା ବିକ୍ଷୋଭ ବା କଟୂକ୍ତି ଛାତ୍ର ପ୍ରତି ପ୍ରୟୋଗ କରନ୍ତି ନାହିଁ । ଏପରି ଅନୁଚିତ ବ୍ୟବହାରକୁ ଶ୍ରୀମା ପସନ୍ଦ କରନ୍ତି ନାହିଁ । ଏଠାରେ ଶିକ୍ଷକଭାବେ ସଫଳତା ଅର୍ଜ୍ଜନ କରିବା ଏକ କଠୋର ସାଧନା ବ୍ୟତୀତ ଅନ୍ୟ କିଛି ନୁହେଁ । ଛାତ୍ରମାନେ ଶିକ୍ଷକଙ୍କ ସମ୍ମୁଖରେ ଖୁବ୍ ନିର୍ଭୟ, ସ୍ପଷ୍ଟବାଦୀ ଓ ଭଦ୍ର ।

6

ଛାତ୍ରମାନଙ୍କର ଏଠାରେ ଏହି ବୈଶିଷ୍ଟ୍ୟ ଯେ ସେମାନେ ଖୁବ୍ ସରଳ ଓ ହୃଦୟବାନ । ଥରେ ସେମାନେ ନିଜର ଭୁଲ୍ ବୁଝିପାରିଲେ; ପୁନଶ୍ଚ ସେପରି ଭୁଲ୍ ନ କରିବାକୁ ସତର୍କ ରହନ୍ତି । ବିଭିନ୍ନ ବୋର୍ଡିଂରେ ଯେଉଁ ଛାତ୍ରଛାତ୍ରୀମାନେ ଅଛନ୍ତି ତାଙ୍କ ପ୍ରତି ତାଙ୍କର ସୁପରିଣ୍ଟେଣ୍ଡେଣ୍ଟ ଅତି ଭଦ୍ର ଓ ସହାନୁଭୂତିପୂର୍ଣ୍ଣ ବ୍ୟବହାର କରନ୍ତି । ଏହି ବ୍ୟବହାରରେ ଛାତ୍ର-ଚରିତ୍ରରେ ବହୁ ପରିବର୍ତ୍ତନ ଦେଖାଯାଏ । ଏଠାରେ ଛାତ୍ରମାନେ କୌଣସି ପ୍ରକାର ଧର୍ମଘଟ ବା ଅନ୍ୟ କିଛି ଅସମ୍ମାନ-ଜନକ କାର୍ଯ୍ୟ କରିବାର କେବେ ବି ଦେଖାଯାଇ ନାହିଁ । ଶିକ୍ଷକ-ମାନଙ୍କ କ୍ଲାସ୍ ରୁମ୍‌ରେ ଓ ଅନ୍ୟତ୍ର ଛାତ୍ରମାନଙ୍କ ପ୍ରତି କିପରି ସହୃଦୟ ଓ ଯଥାର୍ଥ ବ୍ୟବହାର କରିବାକୁ ହେବ ସେ ସମ୍ବନ୍ଧରେ ମା'ଙ୍କ ବାଣୀ ଏଠାରେ ଉଲ୍ଲେଖଯୋଗ୍ୟ । ଶୃଙ୍ଖଳା ରକ୍ଷା କରିବାର ସବୁଠାରୁ ପ୍ରକୃଷ୍ଟ ପନ୍ଥା କ'ଣ ମା' ଶିକ୍ଷକମାନଙ୍କୁ ଲକ୍ଷ୍ୟକରି କହୁଛନ୍ତି

"ଉଦାହରଣହିଁ ସବୁଠାରୁ ଉତ୍ତମ ଉପଦେଷ୍ଟା । ଛାତ୍ରମାନଙ୍କ ଠାରୁ ଏପରି କୌଣସି ଶୃଙ୍ଖଳା ଦାବୀ କରିବ ନାହିଁ, ଯାହା ତୁମେ ନିଜେ କର ନାହିଁ । ସ୍ଥିରତା, ସମତା, ଶୃଙ୍ଖଳା, ପଦ୍ଧତି, ବୃଥା ବାକ୍ୟବ୍ୟୟରୁ ନିବୃତ୍ତି ଇତ୍ୟାଦି ବିଷୟ ଯଦି ଛାତ୍ରମାନେ ଶିକ୍ଷା କରିବା ଉଚିତ୍, ତେବେ ଶିକ୍ଷକ ଏହାକୁ ନିରନ୍ତର ପାଳନ କରିବା ଉଚିତ୍ । ଶିକ୍ଷକ ସର୍ବଦା ସମୟାନୁବର୍ତ୍ତୀ ହେବା ଉଚିତ୍ । ପିରିୟଡ଼୍ ଆରମ୍ଭ ହେବାର କେତେ ମିନିଟ୍ ପୂର୍ବରୁ କ୍ଲାସ୍‌କୁ ଆସିବା ପ୍ରୟୋଜନ । ସର୍ବଦା ଯଥାଯଥ ପୋଷାକ ପରିଧାନ କରିବା ବିଧେୟ । ଆଉ ମଧ୍ୟ ସେ ଯଦି ଚାହାନ୍ତି ଯେ ତାଙ୍କର ଛାତ୍ରମାନେ କେବେ ବି ରାଗନ୍ତୁ ନାହିଁ, ତେବେ ସେ ନିଜେ କେବେ ବି ସେମାନଙ୍କ ଉପରେ ରାଗିବେ ନାହିଁ ଏବଂ ଉଚିତ୍ ନ୍ୟାୟରେ ସେ ଯେପରି ଛାତ୍ରମାନଙ୍କୁ କହିବାକୁ 'ସମର୍ଥ

ହେବେ, 'କୌଣସି ପ୍ରକାର ଦୁଷ୍ଟାମୀର ଶେଷ ପରିଣାମ ଦୁଃଖଦାୟକ' (Rough play ends in tears.)। ଆଉ ସେ କେବେ ବି ଛାତ୍ର ପ୍ରତି ହାତ ଉଠାଇବେ ନାହିଁ । ଏହିସବୁ ହେଲା ଅତି ସାଧାରଣ ଏବଂ ପ୍ରାଥମିକ ନିୟମ ଏବଂ ସ୍ଥାନ ନିର୍ବିଶେଷରେ ପ୍ରତ୍ୟେକ ସ୍କୁଲରେ ଏହା ପାଳିତ ହେବା ଉଚିତ୍ ।"

ଭାରତର ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟରେ ଛାତ୍ର-ବିଶୃଙ୍ଖଳା ଯେପରି ଦେଖା ଦେଇଛି, ସେ ବିଷୟରେ ଏହି ଶିକ୍ଷାକେନ୍ଦ୍ର ଏକ ଚ୍ୟାଲେଞ୍ଜ !

## ଫଳାଫଳ ଓ ମତାମତ

ଶିକ୍ଷାକେନ୍ଦ୍ରର ଜଣେ ବଶିଷ୍ଟ ପରିଦର୍ଶକଙ୍କ ମତ ଏଠାରେ ଉଲ୍ଲେଖ କରିବା । ଥରେ ଗାନ୍ଧୀ-ସ୍ମାରକ-ନିଧିର ଚେୟାରମ୍ୟାନ ଶ୍ରୀଯୁକ୍ତ ଦିବାକର ଶିକ୍ଷାକେନ୍ଦ୍ର ପରିଦର୍ଶନ କରି ସାରିଲା ପରେ ଶିକ୍ଷାକେନ୍ଦ୍ରର ଉଚ୍ଚ ଶ୍ରେଣୀର ଜନୈକ ଛାତ୍ର ତାଙ୍କୁ ପ୍ରଶ୍ନ କରିଥିଲେ, "ଦେଶ ବିଦେଶରେ ବହୁ ବିଶ୍ୱବିଦ୍ୟାଳୟ ଓ ଶିକ୍ଷାନୁଷ୍ଠାନ ଆପଣ ଦେଖିଛନ୍ତି । ଶ୍ରୀଅରବିନ୍ଦ ଶିକ୍ଷାକେନ୍ଦ୍ରର ଆପଣ କୌଣସି ବୈଶିଷ୍ଟ୍ୟ ଦେଖିପାରୁଛନ୍ତି କି ?" ଶ୍ରୀଯୁକ୍ତ ଦିବାକର ଅଳ୍ପକ୍ଷଣ ଚିନ୍ତାକରି ଯେଉଁ ମନ୍ତବ୍ୟ ପ୍ରକାଶ କରିଥିଲେ ତାହା ଏଠାରେ ନିଜ ଭାଷାରେ ଉଲ୍ଲେଖ କଲି ।

ପ୍ରଥମତଃ ଏଠାରେ ଛାତ୍ରମାନଙ୍କୁ ଯେଉଁ ଶିକ୍ଷା ଦିଆହୁଏ ତାହା ପୂର୍ଣ୍ଣାଙ୍ଗ ଶିକ୍ଷା । ଏଠାରେ ଛାତ୍ରକୁ ଉପନିଷଦର 'ପୂର୍ଣ୍ଣ-ପୁରୁଷ'ରୂପେ ଗ୍ରହଣ କରାଯାଇଛି । ତାହାର ବ୍ୟକ୍ତିତ୍ୱର ଯେପରି ସର୍ବବିଧ ବିକାଶ ଓ କଲ୍ୟାଣ ସାଧିତ ହୋଇପାରେ ସେଥିପ୍ରତି ନଜର ଦିଆଯାଇଛି ।

ତାହାର ଶାରୀରିକ, ପ୍ରାଣିକ, ମାନସିକ ଓ ଆଧ୍ୟାତ୍ମିକ ଶିକ୍ଷାର ଏଠାରେ ପର୍ଯ୍ୟାପ୍ତ ବ୍ୟବସ୍ଥା ରହିଛି ।

ଦ୍ୱିତୀୟତଃ ଏଠାରେ ପ୍ରତ୍ୟେକ ଛାତ୍ର ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ ଶ୍ରୀଅରବିନ୍ଦଙ୍କ ଜୀବନ-ଦର୍ଶନ ଓ ଆଦର୍ଶକୁ ଜୀବନର ଲକ୍ଷ୍ୟ ବୋଲି ଗ୍ରହଣ କରିଛନ୍ତି । ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କର ଆଧ୍ୟାତ୍ମିକ ପ୍ରଭାବ ଏଠାରେ ଛାତ୍ରର ଅବଚେତନ ପ୍ରାଣକୁ ସ୍ପର୍ଶ କରିଛି । ଏପରି ଏକ ମହାନ୍ ଆଦର୍ଶରେ ଛାତ୍ରମାନେ ଅନୁପ୍ରାଣିତ ହେବା ଦେଶ ପକ୍ଷରେ ଖୁବ୍ ଗୌରବର ବିଷୟ ।

ତୃତୀୟତଃ ଏଠାରେ ଛାତ୍ରମାନଙ୍କର ପ୍ରତ୍ୟେକ କାର୍ଯ୍ୟରେ— ପାଠପଢ଼ା, ଖେଳାଖେଳି, କୁସ୍ତି-କସରତ୍, ନୃତ୍ୟଗୀତ ମଧ୍ୟରେ ଗୋଟାଏ ଅନ୍ତର୍ନିହିତ ଶୃଙ୍ଖଳା ଓ ନୀରବତା ରହିଛି । ଏହାକୁହିଁ 'Noiseless action' ବା ବିନା କୋଳାହଳରେ କର୍ମ-ସାଧନ ବୋଲି କୁହାଯାଇପାରେ । ଏପରି ବିନା କୋଳାହଳରେ କର୍ମ-ସାଧନ, ଆନ୍ତର ପ୍ରଶାନ୍ତି ଓ ଅପୂର୍ବ ଶୃଙ୍ଖଳାଜ୍ଞାନ ଭାରତବର୍ଷରେ ଅନ୍ୟ କୁତ୍ରାପି ଦୃଷ୍ଟିଗୋଚର ହୁଏ ନାହିଁ ।

ଚତୁର୍ଥତଃ ଏଠାରେ ଛାତ୍ରମାନଙ୍କର ଏକ ବିଶିଷ୍ଟ ଗୁଣ ଏହି ଯେ ସେମାନେ ସର୍ବଦା ପ୍ରଫୁଲ୍ଲ, ପ୍ରସନ୍ନ ଓ ହସହସ ମୁଖ । ବାହାର ବିଶ୍ୱବିଦ୍ୟାଳୟ ଛାତ୍ରମାନଙ୍କ ମଧ୍ୟରେ ଆଜି ଯେପରି ଗୋଟାଏ ହତାଶା, ନୈରାଶ୍ୟ ଓ ଭଗ୍ନ-ମନୋଭାବ ଓ ନିରୁତ୍ସାହ ଦେଖାଦେଇଛି ଏଠାରେ ତାହା ନାହିଁ ।

ଶ୍ରୀଯୁକ୍ତ ଦିବାକରଙ୍କର ଏହି ବିଜ୍ଞଜନୋଚିତ ମତାମତ ଯେକୌଣସି ବ୍ୟକ୍ତି ପକ୍ଷରେ ବିଚାର୍ଯ୍ୟ ।

ଶିକ୍ଷାକେନ୍ଦ୍ରର ଭବିଷ୍ୟତ ଅତି ସ୍ପଷ୍ଟ ଏବଂ ଉଜ୍ଜ୍ୱଳ ସମଗ୍ର ଜଗତରେ ଏହି ଶିକ୍ଷାକେନ୍ଦ୍ର ଦିନେ ଏକ ବିଶିଷ୍ଟ ଅନୁଷ୍ଠାନରୂପେ ଛିଡ଼ା ହେବ, ଏଥିରେ ଦ୍ୱିଧାର ଅବକାଶ ନାହିଁ । ଜଗତରେ ନୂତନ ଜୀବନ ଏବଂ ନୂତନ ସମାଜ ପ୍ରତିଷ୍ଠା କରିବାରେ ଏହି ଶିକ୍ଷାକେନ୍ଦ୍ରର ଛାତ୍ରମାନେ ଯେ ଅଗ୍ରଣୀ ହେବେ ତାର ପୂର୍ବାଭାସ ଏଠାରେ ସ୍ପଷ୍ଟରୂପେ ଦେଖା ଦେଇଛି । ସମଗ୍ର ଦେଶରେ ଶ୍ରୀଅରବିନ୍ଦଙ୍କ ଭାବଧାରା ପ୍ରଚାରିତ ହେବା ସଙ୍ଗେ ସଙ୍ଗେ ଏହି ଶିକ୍ଷା ଦେଶକୁ ବହୁଭାବରେ ପ୍ରଭାବିତ କରିବ । ଯଦି ଭାରତବର୍ଷକୁ ତାହାର ସ୍ୱକୀୟ ମହିମା ଓ ଆଧ୍ୟାତ୍ମିକ ପ୍ରତିଭା ବଜାୟ ରଖି ଓ ଆଧୁନିକ ପାଶ୍ଚାତ୍ୟ ସଭ୍ୟତାର ସଙ୍ଗେ ତାଳ ଦେଇ, ତାର ଜାଗତିକ ଓ ଭୌତିକ ଉନ୍ନତିକୁ ଗ୍ରହଣ କରି ଚାଲିବାକୁ ହୁଏ, ତେବେ ଶ୍ରୀଅରବିନ୍ଦଙ୍କ ଶିକ୍ଷାର ଆଦର୍ଶ ଦେଶକୁ ଏକ ସୁନିର୍ଦ୍ଦିଷ୍ଟ ପଥ ଯୋଗାଇବ ।



# ପରିଶିଷ୍ଟ

## ଶିକ୍ଷାଦାନର ତିନୋଟି ନିୟମ :

ଯଥାର୍ଥ ଶିକ୍ଷାଦାନର ପ୍ରଥମ ନିୟମ ଏହି ଯେ, କିଛି ବି ଶିକ୍ଷା ଦିଆଯାଇ ପାରିବ ନାହିଁ । ଶିକ୍ଷକ ଜଣେ ଉପଦେଷ୍ଟା ବା ଅବଧାନ ନୁହଁନ୍ତି, ସେ ଜଣେ ସାହାଯ୍ୟଦାତା ଓ ପଥ-ପ୍ରଦର୍ଶକ । ତାଙ୍କର କର୍ତ୍ତବ୍ୟ ହେଲା ସୂଚନା ଦେବା, କିନ୍ତୁ କିଛି ଲଦି ଦେବା ନୁହେଁ; ପ୍ରକୃତରେ ସେ ଛାତ୍ରର ମନକୁ ତାଲିମ କରନ୍ତି ନାହିଁ, ସେ କେବଳ ତାହାର ଜ୍ଞାନ ଆହରଣ କରିବାର ଯନ୍ତ୍ରଗୁଡ଼ିକୁ କିପରି ପୂର୍ଣ୍ଣତା ପ୍ରଦାନ କରିବାକୁ ହେବ ତାହା ଦେଖାଇ ଦିଅନ୍ତି ଏବଂ ତାହାର ପ୍ରୟୋଗରେ ଉତ୍ସାହିତ ଓ ସହାୟତା କରନ୍ତି । ସେ ତାକୁ ଜ୍ଞାନ ପ୍ରଦାନ କରନ୍ତି ନାହିଁ; ନିଜେ ସେ କିପରି ଜ୍ଞାନ ଅର୍ଜ୍ଜନ କରିପାରିବ ତାହାର ଉପାୟ ବତାଇ ଦିଅନ୍ତି । ଶିଶୁ, ବାଳକ, ବାଳିକା ବା ବୟସ୍କ—ପ୍ରତ୍ୟେକଙ୍କ ପକ୍ଷରେ ଉତ୍ତମ ଶିକ୍ଷାଦାନର କେବଳ ଏହି ଗୋଟିଏ ଶକ୍ତିଶାଳୀ ନିୟମ ଅଛି । ବୟସର ତାରତମ୍ୟରେ ପ୍ରୟୋଜନୀୟ ସାହାଯ୍ୟ ଓ ନିର୍ଦ୍ଦେଶର ମାତ୍ରା କମ୍ ବେଶୀ ହୋଇପାରେ, କିନ୍ତୁ ମୂଳତଃ ଏହି ନିୟମର କୌଣସି ପରିବର୍ତ୍ତନ ହୁଏ ନାହିଁ ।

ଦ୍ୱିତୀୟ ନିୟମଟି ହେଲା—ମନର ଅଭିବୃଦ୍ଧିରେ ମନର ପରାମର୍ଶ ଗ୍ରହଣ କରିବାକୁ ପଡ଼ିବ । ଛାତ୍ରମାନଙ୍କୁ ପିତାମାତା ବା ଶିକ୍ଷକ ଅଭିଳଷିତ ଛାଞ୍ଚରେ ପିଟାପିଟି କରି ଗଢ଼ି ତିଆରି କରିବାର

ଯେଉଁ ଧାରଣା ତାହା ଏକ ବର୍ବରୋଚିତ ଅଜ୍ଞାନ କୁସଂସ୍କାର ମାତ୍ର । ସୁତ୍ର କେବଳ ନିଜେ ନିଜର ସ୍ୱଭାବ ଅନୁଯାୟୀ ଅଭିବୃଦ୍ଧି ଲାଭ କରିବାକୁ ଅନୁପ୍ରାଣିତ ହେବା ଉଚିତ । ପିତାମାତାଙ୍କ ପକ୍ଷରେ ଏହାହିଁ ସବୁଠାରୁ ବଡ଼ ଭୁଲ—ପୂର୍ବରୁ ପୁତ୍ର-କନ୍ୟାଙ୍କୁ ଏହି ବିଶିଷ୍ଟ ଗୁଣାବଳୀ, ଏହିସବୁ ଶକ୍ତି, ଭାବ ଓ ଧୁଣ୍ୟର ବିକାଶ ନିମିତ୍ତ ଅଥବା ପୂର୍ବ-କଳ୍ପିତ ଏକ ବିଶେଷ ବୃତ୍ତି ନିମିତ୍ତ ପ୍ରସ୍ତୁତ କରା-ଇବା । ସ୍ୱଭାବକୁ ତାହାର ନିଜର ଧର୍ମ ତ୍ୟାଗ କରିବା ପାଇଁ ବାଧ୍ୟ କରିବା ଅର୍ଥ ସର୍ବଦାନ ପାଇଁ ତାହାର କ୍ଷତି ଘଟାଇବା, ଅଭି-ବୃଦ୍ଧିରେ ବ୍ୟାଘାତ ଆଣିବା ଓ ପୂର୍ଣ୍ଣତା ପ୍ରାପ୍ତିକୁ ନଷ୍ଟ କରିବା । ମାନବ-ଆତ୍ମା ଉପରେ ଏହା ଏକ ସ୍ୱାର୍ଥ-ଜଡ଼ିତ ଅତ୍ୟାଚାର ଏବଂ ଜାତି ପକ୍ଷରେ ଏକ କ୍ଷତ (wound) ତୁଲ୍ୟ; କାରଣ ଏହା ଫଳରେ ଦେଶ ଓ ଜାତିର ମଙ୍ଗଳ ନିମିତ୍ତ ବ୍ୟକ୍ତି ତାହାର ଯେଉଁ ସର୍ବୋତ୍କୃଷ୍ଟ ଦାନ ଦେଇଥାଆନ୍ତା, ତାହା ଦେଶ ଓ ଜାତି ହରାଇ ବସେ ଆଉ ତାହା ପରିବର୍ତ୍ତେ ଗ୍ରହଣ କରିବାକୁ ବାଧ୍ୟ ହୁଏ--ବ୍ୟକ୍ତିର ଯାହା-କିଛି ଅପୂର୍ଣ୍ଣ କୃତ୍ରିମ, ଦ୍ୱିତୀୟ ଶ୍ରେଣୀୟ, ସ୍ୱଳ୍ପ ଚେଷ୍ଟାସାଧ୍ୟ ଓ ସାଧା-ରଣ । ପ୍ରତ୍ୟେକ ମନୁଷ୍ୟର ଭିତରେ କିଛି ଦିବ୍ୟ ବସ୍ତୁ ନିହିତ ଅଛି, ଯାହା ତାହାର ନିଜସ୍ୱ; ଆଉ ଭଗବତ୍ ପ୍ରଦତ୍ତ ପୂର୍ଣ୍ଣତା ଓ ସାମର୍ଥ୍ୟ ପ୍ରାପ୍ତି ନିମିତ୍ତ ପ୍ରତ୍ୟେକର ଯେଉଁ ସୁଯୋଗ ରହିଛି ତାହା ଯେତେ କ୍ଷୁଦ୍ର ପରିସର ମଧ୍ୟରେ ହେଉ ନା କାହିଁକି, ପୁଣି ସେହି ସୁଯୋଗକୁ ସେ ଗ୍ରହଣ କରିପାରେ ଅଥବା ବର୍ଜ୍ଜନ କରିପାରେ । ଆମର କର୍ତ୍ତବ୍ୟ ହେଲା ଏହାକୁ ଆବିଷ୍କାର କରିବା, ବିକଶିତ କରାଇବା ଓ ବ୍ୟବହାର କରିବା । ଶିକ୍ଷାର ସର୍ବପ୍ରଥମ ଲକ୍ଷ୍ୟ

ହେଲା—ଏକ ମହତ୍ ଉଦ୍ଦେଶ୍ୟ ସାଧନ ନିମିତ୍ତ ବିବର୍ତ୍ତମାନ ମାନବାତ୍ମାକୁ ତାହା ନିଜ ମଧ୍ୟରୁ, ତନ୍ମଧ୍ୟସ୍ଥ ସର୍ବୋତ୍କୃଷ୍ଟ ବସ୍ତୁକୁ ବାହାର କରି ଆଣିବା ଓ ପୂର୍ଣ୍ଣତା ପ୍ରଦାନ କରିବାରେ ସାହାଯ୍ୟ କରିବା ।

ଶିକ୍ଷାଦାନର ତୃତୀୟ ନିୟମ ହେଉଛି—ବର୍ତ୍ତମାନରୁ ସୁଦୂର ଭବିଷ୍ୟତ୍ ନିମିତ୍ତ, ଯାହା ବିଦ୍ୟମାନ ଅଛି ଆଉ ଯାହା ବିକଶିତ ହେବ, ସେଥି ନିମିତ୍ତ କାର୍ଯ୍ୟ କରିବା । ପ୍ରାୟ ସର୍ବଦା ମନୁଷ୍ୟ-ପ୍ରକୃତିର ମୂଳଭିତ୍ତି ହେଲା ତାହାର ବଂଶ-ପରମ୍ପରା, ତାହାର ପରିବେଶ, ଜାତୀୟତା, ଦେଶ, ଯେଉଁ ମୃତ୍ତିକାରୁ ସେ ଖାଦ୍ୟ-ଗ୍ରହଣ କରୁଛି, ଯେଉଁ ବାୟୁ ସେ ନିଶ୍ୱାସରେ ସେବନ କରେ, ଯେଉଁ ଦୃଶ୍ୟ, ଶବ୍ଦ ଓ ଅଭ୍ୟାସରାଜି ପ୍ରତି ସେ ଅଭ୍ୟସ୍ତ ଏବଂ ଏହି ସଙ୍ଗକୁ ତାହାର ଆତ୍ମାର ଅତୀତ ପରମ୍ପରା । ଆମ୍ଭମାନଙ୍କ ସ୍ୱଭାବର ଚେର-ମୂଳକୁ ତା' ନିଜସ୍ୱ ଭୂମିରୁ ଉପାଡ଼ି ଦେବା ଉଚିତ ନୁହେଁ, କାରଣ ଏହାହିଁ ସ୍ୱଭାବର ଯଥାର୍ଥ ବିକାଶ-କ୍ଷେତ୍ର; କିମ୍ବା ମନର ଚତୁଃପାର୍ଶ୍ୱରେ ଏପରି ଏକ ଜୀବନଧାରାର ରୂପ ଓ ଭାବ ଗଢ଼ି ତୋଳିବା ଯାହା ତାହା ପକ୍ଷରେ ବିଜାତୀୟ ନୁହେଁ ଏବଂ ଯାହା ମଧ୍ୟରେ ସେ ସ୍ୱଚ୍ଛନ୍ଦରେ ଗଢ଼ି ଉଠିପାରିବ । ଯଦି କିଛି ବାହାରରୁ ଆଣିବାକୁ ଆବଶ୍ୟକ ପଡ଼େ, ତେବେ ଏହାକୁ ମନ ପାଖରେ ସମର୍ପଣ କରିବାକୁ ହେବ, ତାହା ଉପରେ ଲଦି ଦେବାକୁ ହେବ ନାହିଁ ।

**ଶ୍ରୀଅରବିନ୍ଦ**

